ମନୁ ଦାଶ



# କଣ୍ଢେଇ ନାଚ

| | | |
|---|---|---|
| କଣ୍ଢେଇ ନାଚ ଓ ଅନ୍ୟାନ୍ୟ ଗଳ୍ପ | : | ଲେଖକ - ମନୁ ଦାଶ |
| ପ୍ରକାଶକ | : | ନୀଳନକ୍ଷତ୍ର, ଭୁବନେଶ୍ୱର |
| ମୁଦ୍ରଣ | : | କେତକୀ ପ୍ରିଣ୍ଟିଂ, ଖଣ୍ଡଗିରି, ଭୁବନେଶ୍ୱରଠାରେ ମୁଦ୍ରିତ |
| ପ୍ରଚ୍ଛଦ | | 'ଥାର୍ଡ଼ ଆଇ କମ୍ୟୁନିକେସନ୍ସ', ନୟାପଲ୍ଲୀ, ଭୁବନେଶ୍ୱର |
| ମୂଲ୍ୟ | : | ପଞ୍ଚଷଠୀ ଟଙ୍କା ମାତ୍ର |
| ମୁଖ୍ୟ ବିତରକ | : | ଏ. କେ. ମିଶ୍ର ବୁକ୍ ଏଜେନ୍ସିଜ୍ (ପ୍ରା) ଲିଃ<br>୨୦୯, ବାପୁଜୀ ନଗର, ଭୁବନେଶ୍ୱର - ୯<br>ଫୋନ୍ : (୦୬୭୪) ୫୩୩୯୭୧<br>ଏବଂ ବାଙ୍କା ବଜାର, କଟକ - ୨<br>ଫୋନ୍ : (୦୬୭୧) ୬୧୮୩୨୭ |

| | | |
|---|---|---|
| **KANDHEI NACHA O' ANYA GALPA** | : | MANU DASH |
| Publisher | | Neela Nakhyatra, Bhubaneswar |
| Printed at | | Ketaki Printing, Khandagiri, Bhubaneswar |
| Cover Design Bhubaneswar | | Third Eye Communications, Nayapalli, |
| Price | | Rs.65.00 only |
| Distributor | | M/s. A. K. Mishra Book Agencies (Pvt.) Ltd.,<br>209, Bapuji Nagar, Bhubaneswar-9.<br>Phone: (0674) 533971<br>and Banka Bazar, Cuttack-2<br>Phone: (0671) 618327 |

# ସୂଚୀ ପତ୍ର

# ସିଂହାସନ

ଏଥରକ ଠେକୁଆର ପାଳିଥିଲା ।

ଜଂଗଲର ବହଳ ଅନ୍ଧାର ଭିତରେ ବି ଆଗକୁ ପାଦ ବଢାଉ ବଢାଉ ସେ ଅନ୍ୟ ମନସ୍କ ହୋଇ ଯାଉଥିଲା ଗୋଟେ ସମ୍ଭାବ୍ୟ ଦୁର୍ଘଟଣାକୁ ମନେ ପକାଇ । ମାତ୍ର ବାଧ୍ୟ ବାଧକତା ହିଁ ସବୁଠୁ ବେଶୀମାତ୍ରାରେ ଆଶ୍ୱସ୍ତି ଆଣିଦେଇଥିଲା ତା ପାଇଁ । ସେ ନିଶ୍ଚୟ ହୋଇଥିଲା । ଏଥିରୁ ତାର ଖସି ଯିବାର ଆଉ କୌଣସି ଉପାୟ ନାହିଁ । ଆଖି ସାମ୍ନାରେ ଭାସି ଉଠୁଥିଲା ବିଦାୟ ବେଳାର ଦୁଃଖାନ୍ତ ଚିତ୍ରଟି । ଯ୍ୟା ପୂର୍ବରୁ ଜୀବନକୁ ଏତେ ଦରକାରୀ ବସ୍ତୁଟେ ବୋଲି ଭାବିବାକୁ ସମୟ ପାଇନଥିଲା ସେ । ଜୀବନ ପ୍ରତି ଗୋଟେ ପ୍ରଚଣ୍ଡ ମମତ୍ୱବୋଧ ଉଙ୍କି ମାରୁଥିଲା, ଯେତେବେଳେ ତାର ପରିବାର, ପରିଜନ, ତାକୁ ଅଶ୍ରୁଳ ବିଦାୟ ଜ୍ଞାପନ କରୁଥିଲେ । ଏକାକୀ ନିର୍ଜନ ଅଥଚ ନିବିଡ଼ ଅରଣ୍ୟ ଭିତରେ କୁନି କୁନି ପାଦଟି ଆଗକୁ କାଢିଲାବେଳେ ତାର ମନେ ହେଉଥିଲା, ଏ ଫୁଲରେ ପୂର୍ବାପେକ୍ଷା ଅଧିକ ମାଦକତା ଚହଟି ଯାଇଛି, ପତ୍ରରେ ଆହୁରି ଘନ ନୀଳର ପ୍ରଲେପ ମାଖି ହୋଇ ଯାଇଛି, ଏପରିକି ଅରଣ୍ୟର ନିଃଶବ୍ଦ ସଂଗୀତ ହୃଦୟକୁ ଆହୁରି କରୁଣ, ଆହୁରି ମାୟାଗ୍ରସ୍ତ କରିଦେଉଛି । ଏତେ ଦୁଃଖ ଭିତରେ ବି ଯେଉଁ ସ୍ୱଗତୋକ୍ତି ଟିକକ ତା ପାଖକୁ ପ୍ରତିଧ୍ୱନି ହୋଇ ଫେରି ଆସୁଥିଲା ତା ହେଲା : ସତରେ ଜୀବନ କେଡ଼େ ସୁନ୍ଦର !" କାଇଁ ଆଗରୁ କେବେ ତ ସେ ଏପରି ଭାବି ନଥିଲା । ଭାବିଚି କି ? ନିଶ୍ଚିତ ହରାଇବାକୁ ଯାଉଥିବା ବସ୍ତୁ ପାଇଁ ଶେଷ ମୁହୂର୍ତ୍ତରେ ଏମିତି ମମତା ଆସିଯାଏ ବୋଲି ତାର ମନେ ହେଲା ।

ଯାତ୍ରା ଆରମ୍ଭ କରିବା ପୂର୍ବରୁ ସେ ତାର ବନ୍ଧୁ ଓ ପ୍ରେମାସ୍ପଦମାନଙ୍କୁ ଶେଷଥର ପାଇଁ ଭେଟିଥିଲା । ସମସ୍ତେ ତାକୁ ଗୋଟେ ଘଞ୍ଚ ଆଲିଙ୍ଗନରେ କୋଳେଇ ନେଇଥିଲେ ଓ

ଅଶ୍ରୁପାତ ପୂର୍ବକ ବିଦାୟ ଦେଉଥିଲେ । ସବୁରି ମୁହଁ ଆଉ ଆଖିରେ ସେତେବେଳେ ଅସହାୟତାର କଦମ୍ବ ଫୁଟିଉଠୁଥିଲା । ଯିମିତି ସମସ୍ତଙ୍କ ଭଳି ସେ ବି ଜାଣିଥିଲା ଆଜିହିଁ ସେ ମରିବାକୁ ଯାଉଛି । କିନ୍ତୁ ଏହା ଭାବିବା ମାତ୍ରେ ତା ଭିତରର ସମସ୍ତ ଅନୁଭୂତି ଓ ଆବେଗ କ୍ରମଶଃ ଜଡ଼ ପାଲଟି ଯାଉଥିବାର ସେ ଅନୁଭବ କରୁଥିଲା । ଅନ୍ୟମାନଙ୍କ ଭଳି ବିଦାୟ ନେବାବେଳେ ଉଚ୍ଚ ସ୍ୱରରେ କାନ୍ଦିବାତ ଦୂରର କଥା, ତାର ଆଖିରୁ ବିନ୍ଦୁଏ ଅଶ୍ରୁପାତ ହେବାର କୌଣସି ସୂଚନା ମଧ୍ୟ ମିଳୁନଥିଲା । ସେମାନଙ୍କର ଅସହାୟବୋଧ ତାକୁ କେଜାଣି କିମିତି ଅସଂଗତ ମନେ ହେଉଥିଲା । ସତରେ କଣ ସେମାନେ ତାର ଅପମୃତ୍ୟୁ ପାଇଁ ଏପରି ବିବ୍ରତ ହେଉଥିଲେ? ନ ହୋଇ ପାରେ ବି ତାର ମନେ ହେଲା । ଦିନେ ନା ଦିନେ ଏମିତି ଗୋଟେ ବିମର୍ଷ ଭାଗ୍ୟର ସମ୍ମୁଖୀନ ହେବାର କଳ୍ପନା କରି ସେମାନେ ହୁଏତ ନିଜକୁ ଖୁବ୍ ବିପନ୍ନ ମନେକରୁଛନ୍ତି । କିନ୍ତୁ ସକଳ ଯନ୍ତ୍ରଣା, ଦ୍ୱନ୍ଦ୍ୱ ଓ ଜୀବନକୁ ଭଲ ପାଇବାର ପ୍ରଚଣ୍ଡ ନିଶାସତ୍ତ୍ୱେ ବିଧି ନିର୍ଦ୍ଦିଷ୍ଟ ଏଇ ଦୁର୍ଘଟଣାରୁ କିଏ ମୁକ୍ତି ପାଇ ପାରିଛି କି ? ପୂର୍ବରୁ ଅନେକ ଏଇ ଭାଗ୍ୟକୁ ତ ନିଜର ସମସ୍ତ ଅନିଚ୍ଛା ଓ ନିରବ ପ୍ରତିବାଦ ସତ୍ତ୍ୱେ ଆବୋରି ନେଇଛନ୍ତି । ସମ୍ଭାବ୍ୟ ଭବିଷ୍ୟତଟି ଆଜି ତା ପାଇଁ ବିଷାଦ ବର୍ତ୍ତମାନରେ ରୂପାନ୍ତରିତ ହେଇଛି । ଯାହାକୁ ଭେଟିବାର ଆଶଙ୍କାରେ ଅନ୍ୟମାନେ ଖୁବ୍ ଅସହାୟ ଜର୍ଜରିତ ମନେ କରୁଛନ୍ତି ।

ସ୍ୱୟଂ ଚାଳିତ ଯନ୍ତ୍ରଟିଏ ଭଳି ଆଗକୁ ପାଦ ବଢ଼ାଉଥିଲାବେଳେ ଗୋଟେ ଆତ୍ମ ପ୍ରତ୍ୟୟ ତାକୁ ଆହୁରି ଜୋର୍‌ରେ ଜାବୁଡ଼ି ଧରୁଥିଲା ଯିମିତି । ମାତ୍ର ପର ମୂହୁର୍ତ୍ତରେ ଯେତେବେଳେ ସେ ନିଜର ବିପର୍ଯ୍ୟସ୍ତ ପରିସ୍ଥିତିକୁ ସମ୍ମୁଖୀନ ହେଉଥିବା କଥା ଚିନ୍ତା କଲା, ଟକ୍‌ମକ୍ ଫୁଟୁଥିବା ପାଣିରେ ଲୁଣ ପଡ଼ିଯିବା ପରି ତାର ସମସ୍ତ ବିଶ୍ୱାସ ମିଳେଇ ଯାଉଥିଲା । ତାର ମନେହେଲା, ଜୀବନର ଅନେକ ଜଟିଳ ସମସ୍ୟାର ସମାଧାନ ପାଇଁ ହୁଏ ତ ଆତ୍ମ ପ୍ରତ୍ୟୟର ପ୍ରୟୋଜନ ଥାଇପାରେ, କିନ୍ତୁ ମରଣ ସମ୍ମୁଖରେ ତ ସମସ୍ତ ପ୍ରତ୍ୟୟ କେବଳ ବେଙ୍ଗ ଜିଭରେ ଅଟକି ଛଟପଟ ହେଉଥିବା ପୋକଟିର ଅର୍ଥହୀନ ସାଲିସ୍ ପରି ।

ଏମିତି ଆକାଶ ପାତାଳ ଭାବୁ ଭାବୁ ହଠାତ୍ ସେ ଗୋଟେ ସୂତ୍ର ପାଇଗଲା । ନଈ ସୁଅରେ ଭାସି ଉବୁଟୁବୁ ହେଉଥିବା ଜୀବଟି ହଠାତ୍ ଯିମିତି ଭେଳାଟିଏ ପାଇଗଲା ! ଆତ୍ମ ପ୍ରତ୍ୟୟର ପାହାଡ଼ ଶିଖରରେ ବସି ଯାଇଥିଲା ସେ । ପୂର୍ବାପେକ୍ଷା ତାର ପାହୁଣ୍ଡର ବ୍ୟବଧାନ କିଛିଟା ବଢ଼ି ଯାଉଥିଲା ଏବେ । ତଥାପି ମନ ଭିତରେ ପ୍ରଶ୍ନଟିଏ ଉଙ୍କିମାରୁଥିଲା; ଏଥରକ ସେ ବର୍ତ୍ତିଯିବ ତ ଏ ବିପଦରୁ ?

ଠେକୁଆଟି ସିଂହ ପାଖରେ ପହଞ୍ଚିଲାବେଳକୁ ଭୋକରେ ସେତେବେଳେ ସିଂହ ଅସମ୍ଭବ ଭାବେ ଛଟପଟ ଓ ବିରକ୍ତି ଭାବ ପ୍ରକାଶ କରୁଥିଲା । ତାକୁ ସେତେବେଳେ ଗୋଟେ

ଅପମାନ ବୋଧ ସଂପୂର୍ଣ୍ଣ ଗ୍ରାସ କରିଯାଇଛି ବୋଲି ତାର ମନେହେଲା, ଯେତେବେଳେ ସେ ଏଇ ନିଷ୍ପତ୍ତିରେ ପହଞ୍ଚିଲା ଯେ ଆଜିର ଏଇ ଶଶା ଶାବକଟିର ଖୁବ୍ କମ୍‌ରେ ପାଞ୍ଚଗୁଣ ଅଧିକ ଓଜନ ବି ତାର ପ୍ରବଳ କ୍ଷୁଧା ମୋଣ୍ଟାଇବାରେ ଅସମର୍ଥ ହେବ । ତଥାପି ଏତେ କ୍ଷୁଦ୍ର ଓ ନିରୀହ ପ୍ରାଣୀଟିକୁ ଦେଖି ନିଜର ପରାକ୍ରମ ଦେଖାଇବା କଥା ଭାବିଲା ମାତ୍ରେ ସିଂହଟି କ୍ରମଶଃ ଲଜ୍ୟାଗ୍ରସ୍ତ ଜଣା ପଡୁଥିଲା । ତାର ମୁହଁ ଦେଖି ସେତେବେଳେ ଯେପରି ମନେ ହେଉଥିଲା, ସୂର୍ଯ୍ୟାସ୍ତର ରଙ୍ଗରୁ ଯିମିତି କିଛିଟା ସେ ଆହରଣ କରି ସାରିଛି । ସିଂହର ଏଇ ଭାବାନ୍ତରକୁ ପଢିନେବାରେ ଠେକୁଆଟିକୁ ବିଶେଷ କଷ୍ଟ ସହିବାକୁ ପଡ଼ି ନଥିଲା : କିବ୍‌ବେ ଶଳା, ଭାରି ବହପ ତ ତୋର ! ହାତୀପରି ହ୍ୟାପ ଝୁଲି ଝୁଲି ଆସୁଛି ।"

ଏପରି ଏକ ପ୍ରଶ୍ନର ମୁକାବିଲା ପାଇଁ ଠେକୁଆଟି ଅନେକ ଆଗରୁ ମାନସିକ ପ୍ରସ୍ତୁତି ନେଇ ସାରିଥିଲା ଯିମିତି, କାରଣ ଏଇ ପ୍ରଶ୍ନର ଉତ୍ତର ଦେବା ଲାଗି ସେ ହସୁ ହସୁ ସ୍ୱାଭାବିକ୍ ସ୍ୱରରେ କହିବାକୁ ଲାଗିଲା,

: ମଣିବା ! ଅଧିନର ଗୋଟେ ଆପତ୍ତି ଅଛି, ଆଜ୍ଞା ହେଲେ ... ।

ସିଂହକୁ ଏପରି ସଂବୋଧନ କଲାବେଳେ ଠେକୁଆ ନିଜେ ବି ଆଶ୍ଚର୍ଯ୍ୟ ହୋଇଗଲା ଯେ ସେ ସାଂପ୍ରତିକ ଚଳଣିରୁ ଅନେକ ଉଚ୍ଚ ପ୍ରଶଂସକ ସଂବୋଧନାତ୍ମକ ଶବ୍ଦମାନଙ୍କର ସାହାଯ୍ୟ ନ ନେଇ ପୂର୍ବ ପ୍ରଚଳିତ ଗୋଟେ ଶବ୍ଦ ସେ ଉଚ୍ଚାରଣ କରି ଦେଇଛି । ଯ୍ୟା ପରେ ସେ ନିଶ୍ଚୟ ହୋଇ ଯାଇଥିଲା ତାର ଆର୍ତ୍ତି ଶୁଣିବା ପରେ ସିଂହ ଗୋଟାଏ ବେଖାତିର୍ ଓ ସଂଭ୍ରାନ୍ତ ହସଟିଏ ଫୋପାଡ଼ି କହିବାକୁ ଆରମ୍ଭ କରିବ : ହଁ, ନିଶ୍ଚୟ କହିବା ହେଉ... କହିବା ହେଉ ।" ସିଂହଟି କହିଲା । ମାତ୍ର ସେ କହିବାରେ ତାଚ୍ଛଲ୍ୟର ଝଲକ ଖେଳି ଯାଉଥିଲା । ଠେକୁଆ ମନଯୋଗୀ ଛାତ୍ରଟି ଭଳି ଚୁପଚାପ ଆଗାମୀ ପରିସ୍ଥିତିକୁ କେବଳ ଲକ୍ଷ୍ୟ କରୁଥିଲା ।

: ଜାଣେବେ୍ ।" ସିଂହର ଏଇ ଦମ୍ଭୋକ୍ତି ପଦକରେ ଠେକୁଆର ଧ୍ୟାନଭଗ୍ନ ହେଲା ଓ ପରିବେଶକୁ ଟିକେ କୋମଳ କରିବା ଉଦ୍ଦେଶ୍ୟରେ ସେ ସ୍ମିତ ହସଟିଏ ତାର ଓଠରେ କିଛି ସମୟ ଝୁଲାଇ ରଖିଲା ଓ କହିଲା - ଜାଣି ପାରନ୍ତି ବୋଲି ତ ମଣିମା ଏତେବଡ଼ ଜଂଗଲର ଅପ୍ରତିଦ୍ୱନ୍ଦୀ ସମ୍ରାଟ, ଦୁଃଖିରଙ୍କିର ମାଆ ବାପ ହୋଇ ପାରିଛନ୍ତି ।

ଠେକୁଆ ପାଖରୁ ନିଜର ଆତ୍ମପ୍ରଶସ୍ତି ଶୁଣିବାବେଳେ ଅହେତୁକ କୁତ୍‌କୁତ୍ ଭାବ ସିଂହକୁ ଅଥୟ କରି ପକାଉଥିଲା, ମାତ୍ର ନିଜର ଏଇ ପ୍ରସନ୍ନ ଭାବଟିକୁ ଧରା ନ ପକାଇବା ପାଇଁ ସେ ଦୃଢ ପରିକର ଥିଲା । ଠେକୁଆ କିନ୍ତୁ ପୂର୍ବ ଭଳି କହିବାକୁ ଲାଗିଲା -

: ଜଙ୍ଗଲ ସାରା ତ ସବୁଠି ଆପଣଙ୍କ ଚିନ୍ତା ।"

: ଓହୋ... ଭାସିଗଲା ସେଇଠୁ ଶଳା ! ତାଙ୍କ ଚିନ୍ତାରେ ଯିମିତି ଏଇନେ ମୁଁ ଦାନା ଛାଡ଼ିଦେବି ?

: ସେମିତି କହିଲେ ଛାତି ଫାଟିଯିବ ହଜୁର୍ ! ଠେକୁଆର ଏଇ ଉକ୍ତି ଭିତରେ ଆତ୍ମାଭିମାନର ସ୍ପଷ୍ଟ ଆଭାସ୍ ମିଳୁଥିଲା । ତା ପରେ ଧୀର ଅଥଚ ଶଙ୍କିତ ସ୍ୱରରେ କହିବାକୁ ସେ ଚାହୁଁଥିଲା : ସାମାନ୍ୟ ପୋକାଟାକୁ ବେଙ୍ଗ ଖାଇ ଦେଉଛି, ବେଙ୍ଗକୁ ଗିଳି ଦେବାରେ ସାପ ବି ଟିକିଏ ହେଲେ କୃପଣ ହେଉନି ଆଉ ସାପକୁ ପାଇଲା କ୍ଷଣି ମୟୁର ତା କାରସାଦି ଦେଖାଇ ଦେଉଛି । ଅଥଚ ମଲାପରେ ବିଲୁଆକି ଶାଗୁଣାଙ୍କ ପେଟରେ ଯାଇପଡ଼ିଥାନ୍ତୁ ବରଂ ତା ଆଗରୁ ଆପଣଙ୍କ ପେଟ ଭିତରକୁ ଚାଲିଯିବାରେ ଗୋଟେ ଆନନ୍ଦ ଅଛି, ଗର୍ବ ଅଛି, ପ୍ରକାରାନ୍ତରେ କହିବାକୁ ଗଲେ ଏହା କୋଟି ଜନ୍ମ ତପସ୍ୟାର ଫଳ ସିନା ।"

ଠେକୁଆର ଆଖିର ଭାଷାକୁ ପଢ଼ିନେବାରେ ସିଂହକୁ ଖୁବ୍ ବେଶୀ ସମୟ ଲାଗିନଥିଲା । ତଥାପି ତାର ଏଇ କୃତାଞ୍ଜଳି ଭାବରେ ବିହ୍ୱଳ ହେବା ପୂର୍ବରୁ ନିଜକୁ ସେ ଯଥା ସଂଭବ ସଂଯତ କରିନେଲା ଓ ସ୍ୱାଭାବିକତାଠୁ ଟିକେ ଅଧିକ ମୁଖାକୃତି କରି କହିଲା ।

: ଓଃ ଭାରି ଭୋକ !"

: ମଣିମା, ମୋ ମାଉଁସ ଏତେ କଅଁଳ ଆଉ ମିଠା ଯେ-କି ଆରାମ ! କି ତୃପ୍ତିକର !! ଖାଲି ଆପଣଙ୍କୁ ଭଲ ଲାଗିଲେ ଏଇ ଜୀବନଟା ଧନ୍ୟ ହୋଇଯିବ । ଠେକୁଆର ଏଇ କଥା କହିବା ଭଙ୍ଗୀରୁ ଅନୁମାନ କରି ହେଉଥିଲା ଯେମିତି ନିଜ ମୃତ୍ୟୁପାଇଁ ଆଦୌ ସେ ବିବ୍ରତ ନୁହେଁ ବରଂ ପ୍ରଚଣ୍ଡ ସ୍ପର୍ଦ୍ଧାର ଛୁରୀଟେ ତା ଆଖିରେ ଚକ୍ ଚକ୍ କରୁଥିଲା । ଭୋକରେ କ୍ରମଶଃ ଅତିଷ୍ଠ ହୋଇ ପଡୁଥିବା ସିଂହ ପାଖରେ ଅଳିଟିଏ ବାଢ଼ି ବସିଲା : ଗୋଟେ କଥା କହିବି ମଣିମା ?

: ଓଃ, ସେଇ କଥା ତ - କୋଉ ଗୋଟେ ଅପରିଚିତ ସିଂହ ଜଙ୍ଗଲ ଭିତରକୁ ଆସି ଯୁଦ୍ଧକୁ ଆହ୍ୱାନ କରୁଛି ମତେ... ଆଉ ଲୁଚି ରହିଚି ବାମ୍ଫି ଭିତରେ ? କିନ୍ତୁ ସଫା ସଫା କହି ଦେଉଛି - ଇମିତି ଚାଲବାଜିଆ ଧନ୍ଦା ମୋ ପାଖରେ ଚଳିବନି କେବେ, ଜାଣିଥା... !

ନିଜର ବୁଝାଇବା କାଇଦା ଅଥବା ସିଂହର ସ୍ପଷ୍ଟୋକ୍ତିରୁ ଠେକୁଆ ଅନୁମାନ କରିନେଲା ଯେ ତାର ଏଇ ଆପତ୍ତି ଗୋଟେ ଅର୍ଥହୀନ ସଂଳାପ ଭଳି ପବନରେ ମିଳେଇ ଯାଇଛି । ମାତ୍ର ସେଥିପାଇଁ ଅନୁତାପ କରିବା ପୂର୍ବରୁ ସେ ନେହୁରା ହବାର ଭଙ୍ଗୀଟିଏ ଦେଖାଇ ପୁନଶ୍ଚ କହିଲା : ତ୍ରୁଟି ମାର୍ଜନା କରିବା ହେଉ ମଣିମା ।" ଠେକୁଆର ଏଇ ନ୍ୟୁନବୋଧ

ସିଂହର କ୍ରୋଧକୁ କିଛିଟା ଅବଶ୍ୟ ପ୍ରଶମିତ କରିଥିଲା । ଏଥର ଦାନ୍ତ ନିକୁଟି କିଛି ସମୟ ସିଂହର ଗାଳିକୁ ଆତ୍ମସ୍ଥ କରିବାକୁ ଯାଉଥିଲା ସେ, ଯିମିତି ତାଠୁ ଅଧିକ ବୟସ୍କ, ଅଭିଜ୍ଞ ଅଥବା କ୍ଷମତାପନ୍ନଠୁ ଗାଳି ଖାଇବାରେ ତାରେ ଗୋଟେ ଆନନ୍ଦ ବରାବର ରହି ଆସିଛି । ସିଂହର ସ୍ୱାଭାବିକ୍ ମାନସିକତା ଫେରିଆସିବା ପରେ ଠେକୁଆ ବିନୟର ସହିତ ବୁଝାଇବାକୁ ଚେଷ୍ଟା କଲା, ଜଙ୍ଗଲର ପ୍ରାୟ ପ୍ରତ୍ୟେକ ପ୍ରାଣୀ ଅସମ୍ଭବ ଭାବେ ସିଂହର ଶୁଭାକାଂକ୍ଷୀ ଯାହା ଆଗରୁ  କେବେ କାହାରି ସମୟରେ ସମ୍ଭବ ହୋଇ ନଥିଲା । ତାର ପ୍ରପିତାମହ ସିଂହର ପ୍ରପିତାମହଙ୍କୁ ଦେଖାଇଥିବା ଅସୌଜନ୍ୟ ବ୍ୟବହାର ପାଇଁ ଦୁଃଖ ପ୍ରକାଶ କରିବା ସଙ୍ଗେସଙ୍ଗେ ପ୍ରପିତାମହ ଜଣେ ମୂର୍ଖ ଓ ନିପଟ ଅସଭ୍ୟ ଥିଲେ ବୋଲି କହିବା ସହ ଠେକୁଆ ଦୁଃଖ ପ୍ରକାଶ କଲା । ତେବେ ଏଇ ଆତ୍ମୀୟତାକୁ ଚିରସ୍ଥାୟୀ କରିବା ଉଦ୍ଦେଶ୍ୟରେ ସେମାନେ ଏକ ସମାଧାନ ଖୋଜି ପାଇଛନ୍ତି । ଏହାଦ୍ୱାରା ଜଙ୍ଗଲର ସମସ୍ତ ପ୍ରାଣୀ ତଥା ସିଂହ ଉଭୟଙ୍କର ସମସ୍ୟା ସମାଧାନ ହୋଇପାରିବ । ପ୍ରକୃତରେ ସେ କଣ କହିବାକୁ ଚାହେଁ ସିଧାସଳଖ ନ କହି ଦୀର୍ଘ ଉପକ୍ରମ କରୁଥିବାରୁ ସିଂହ ତାର ମୁଖ ମଣ୍ଡଳରେ ବିରକ୍ତିର ଭାବ ଦେଖାଇଲା ଓ ଏହା ବୁଝିପାରି ଠେକୁଆଟି ସଙ୍ଗେସଙ୍ଗେ ତାର ବକ୍ତବ୍ୟ ଶେଷ କରିବାକୁ ଚାହିଁଲା ।

ଏତେବେଳ ଯାଏ ଠେକୁଆର ସବୁ କଥା ସିଂହ ଜଣେ ବୃଦ୍ଧ ଦାର୍ଶନିକ ଭଳି ଶୁଣୁଥିଲା । ଠେକୁଆର ପ୍ରସ୍ତାବ ଶୁଣିବା ପରେ ତା ଓଠରେ ଧାରୁଏ ହସ ଚହଟି ଗଲା ଓ ତାହା କ୍ରମଶଃ ବିପୁଳ ଆକାର ଧାରଣ କରି ଶେଷର ଅଟ୍ଟହାସ୍ୟରେ ପରିଣତ ହେଉଥିଲା । ଠେକୁଆଟି ସିଂହର ଏଇ ଆକସ୍ମିକ ଭାବାନ୍ତର ଲକ୍ଷ୍ୟ କରି ଆଶଙ୍କା କରିଥିଲେ ମଧ୍ୟ ମୁହଁରେ ଏପରି ଏକ ଦୁଃସ୍ଥଭାବଟିକୁ ଆଶ୍ରୟ ଦେଇ ନଥିଲା । ପ୍ରକାରାନ୍ତରେ ଏହାକୁ ଉପଭୋଗ କରି ଧନ୍ୟ ହୋଇଥିବାର ଚିହ୍ନଟିଏ ଫୁଟାଇ କହିବାକୁ ଲାଗିଲା: ନ ହେଲେ ଅସୁବିଧା ହବ ମଣିମା !"

ସିଂହପ୍ରତି ଠେକୁଆର ଏହା ଥିଲା ଚେତାବନୀର ପ୍ରଥମ ଓ ଶୀର୍ଷ ପାହାଚ । ମାତ୍ର ସିଂହ ଏଇ ଧମକ ପୂର୍ଣ୍ଣ ପ୍ରତିଶ୍ରୁତିରେ କୌଣସି ପ୍ରତିକ୍ରିୟା ସୃଷ୍ଟି କରୁ ନ ଥିଲା, ବରଂ ନିଜକୁ ନିଜେ ପ୍ରଶ୍ନ କଲା : କିଏ କଣ ନିଜର ବୃତ୍ତି ଛାଡ଼େ, ଛାଡ଼ିପାରେ ?" ଠେକୁଆ ତାର ପ୍ରଶ୍ନର ଉତ୍ତର ଦେବାକୁ ଯାଇ କହିଲା : ସେଥିପାଇଁ ଆତ୍ମପ୍ରତ୍ୟୟ ଲୋଡ଼ା ।"

: ଅସମ୍ଭବ । ସିଂହ କହିଲା ।

: ମାଂସ ଅପେକ୍ଷା ବରଂ ଜଙ୍ଗଲର ଫଳ ମୂଳ ଅଧିକ ପୁଷ୍ଟିକର ଓ ସ୍ୱାଦିଷ୍ଟ । ଠେକୁଆ ବୁଝାଇଲା ଭଳି ସ୍ୱରରେ କହିଲା ।

: ଅସମ୍ଭବ ! ଭୋକରେ ଆଉଟ ପାଉଟ ହେଲାବେଳେ ବି ସିଂହ ତାର ଦେହ ଟିକେ ଝାଡ଼ିଦେଇ ଏତକ କହିଲା । ଫଳତଃ ଠେକୁଆକୁ ସେ ଜଣାଇବାକୁ ଚାହୁଁଥିଲା ଏବେ ବି ସେ ଶକ୍ତିହୀନ ହୋଇ ଯାଇନି । ତାର ଅଙ୍ଗପ୍ରତ୍ୟଙ୍ଗରେ ଅଲୌକିକ କାର୍ଯ୍ୟସବୁ କରିବା ଲାଗି ବଳ ଲୁଚି ରହିଛି । ମାତ୍ର ଠେକୁଆ ଏଥର ଜଣେ ଶୁଭେଚ୍ଛୁ ଭଳି କହିବାକୁ ଲାଗିଲା : ଆପଣଙ୍କ ଇଚ୍ଛା । ଆପଣଙ୍କ ପ୍ରପିତାମହଙ୍କ ସମୟ ଭଳି ତ ସେମାନେ ଆଉ ବିଚ୍ଛିନ୍ନ ନୁହଁନ୍ତି, ମିଳିତ ମୁକାବିଲା ପାଇଁ ଆଜିକାଲି ସେମାନେ ଚିନ୍ତା କଲେଣି ।

: ଅସମ୍ଭବ ।" ଖୁବ୍ ଜୋରରେ କହୁ କହୁ ଅଟକି ଗଲା ସିଂହ । ହଠାତ୍ ମନେହେଲା କିଏ ଯେପରି ତାର ତଣ୍ଟି ଚିପି ଧରିଛି । ଶେଷ ଆଡ଼କୁ ତାର ସ୍ୱର ଦୁର୍ବଳ ହୋଇ ଯାଉଥିଲା କିଛି ଗୋଟେ ଆଶଙ୍କା କରି ।

ସିଂହ ଯେ କିଛିଟା ଭୟ ପାଇ ଯାଇଛି, ଏକଥା ଠେକୁଆ ପାଖରେ ଆଉ ଗୋପନୀୟ ହୋଇ ରହି ପାରିଲାନି । ଭାବିବା ମାତ୍ରେ ସେ ଟିକେ ମୁର୍କି ହସା ଦେଲା । ସେତେବେଳେ ଆକାଶରେ ମେଘ ଭର୍ତ୍ତି ହୋଇ ଯାଇଥିଲା ଓ ଗୋଟେ ଆସନ୍ନ ଝଡ଼ର ସୂଚନା ସ୍ପଷ୍ଟ ହୋଇ ଉଠୁଥିଲା । ଅନେକ ସମୟ ଧରି ବତାସ ଓ ପବନ ଜଙ୍ଗଲ ଭିତରେ ଲାଗି ରହିଥିଲା ।

ସିଂହର ମନେ ହେଉଥିଲା ଏଇନେ ଯିମିତି ସାରା ଜଗତଟା ଧ୍ୱଂସ ପାଇଯିବ । ମାତ୍ର ଠେକୁଆର ଚେତାବନୀ ତାକୁ ବାରମ୍ବାର ଅଥୟ କରୁଥିଲା । ତା ମନଭିତରେ ଅନେକ ପ୍ରଶ୍ନ ଉବୁଟୁବୁ ହେଉଥିଲା : ଅସମ୍ଭବ, ମୁଁ ସେମାନଙ୍କୁ ଭଲକରି ଜାଣେ । ସାମ୍ନାରେ ଠିଆ ହେଲାବେଳେ ଗୋଡ଼ ଥରେ । ସେମାନେ ଏତେବେଡ଼ ସାହାସ କେବେ ହେଲେ କରି ପାରିବେନି । ଯଦି ସେମାନେ ସତକୁ ସତ ଆକ୍ରମଣ କରିନ୍ତି ତେବେ କଣ କରାଯାଇ ପରିବ? ଅସମ୍ଭବ, ମୁଁ ସେମାନଙ୍କୁ ଭଲକରି ଜାଣେ । ସାମ୍ନାରେ ଠିଆ ହେଲାବେଳେ ଗୋଡ଼ ଥରେ । ସେମାନେ ଏତେବଡ଼ ସାହାସ କେବେ ହେଲେ କରିପାରିବେନି । ଯଦି, ସେମାନେ ସତକୁ ସତ ଆକ୍ରମଣ କରନ୍ତି ତେବେ କଣ କରାଯାଇପାରିବ ? ନାଃ, ଅସମ୍ଭବ ...।

ଝଡ଼ ଶେଷର ଅକାଶ ପରିଷ୍କାର ହେଇ ଯାଇଥିଲା । ବତାସ ସହ କୁସ୍ତିକରି ଗଛ, ବୃଛ ଓ ଜଙ୍ଗଲର ପ୍ରାଣୀମାନେ କ୍ଳାନ୍ତ ହୋଇ ପଡ଼ିଥିଲେ ଯେମିତି । ଜଙ୍ଗଲ ଭିତରେ କିଛିଟା ଆଲୁଅ କିଛିଟା ଅନ୍ଧାରର ଖେଳ ଚାଲିଥିଲା । ଅନ୍ଧାର କଟିଯିବା ପରେ ଦେଖାଗଲା ହଠାତ୍ ସିଂହଟି ଠେକୁଆରେ ଓ ଠେକୁଆଟି ସିଂହରେ ରୂପାନ୍ତରିତ ହୋଇଯାଇଛି । ରୂପାନ୍ତରିତ ଠେକୁଆଟି ଖୁବ୍ ଭୟ ପାଇ ଯାଇଥିବାର ମନେ ହେଉଥିଲା । ରୂପାନ୍ତରିତ ସିଂହଟି ଏଥର ରାଗରେ ଲାଞ୍ଜ ପିଟୁ ପିଟୁ କହିବାକୁ ଲାଗିଲା : ଓଃ ଭାରି ଭୋକ ।"

# ଡାକମୁନ୍‌ସୀ

ବେଶ୍ କିଛିଦିନ ବିତିଗଲାଣି ଏ ଭିତରେ । ବୁଢ଼ା ହରି ସିଂର ଚାକିରି କାଳ ତ କେବେଠୁଁ ପୂରିଗଲାଣି । ପୁଅ ଗୋପାଳ ପାଖରୁ ଆସି ମଫସଲ ଗାଁରେ ରହୁଥାନ୍ତି । ସେଇଠି ଅନ୍ତୁଡ଼ି ଜଳିଥିଲା, ଜୁଇ ବି ଜଳିବ । ଭିଟାମାଟିର ମୋହ ତାଙ୍କୁ ଅଟକେଇ ରଖିଛି ଏଠି ।

ହରି ସିଂ ବଡ଼ ମଉଜିଆ ଲୋକ । ବାଙ୍ଗରା ଅଥଚ ପତଳା ହୋଇ ଲୋକଟାଏ । ମୁଣ୍ଡରେ ଗୋଟେ ବୋଲି ବାଳ ନାହିଁ । ଠିକ୍ ଗୋଟେ ପାଚିଲା ତରଭୁଜ ଭଳି ଦେଖାଯାଉଛି । ପଛପଟେ ଯାହା କେରାଏ ଚୂଳ ଝୁଲୁଛି-ସେସବୁ ଝୋଟ ପରି ଧଳା ପଡ଼ି ଆସିଲାଣି କେବେଠୁଁ । ଦେହ ଉପରେ ଛାଲଟାର ରଙ୍ଗ ମହଳ ପଡ଼ି ଆସୁଛି । ତେଜ କମି ଆସୁଛି ବେଳକୁ ବେଳ । ଠିକ୍ ବେଳ ଉଣ୍ଡି ବୁଢ଼ା ହରିନାମ କରିବାକୁ ବି ମନ ବଳେଇଛି । ଗାଧୋଇ ସାରି କପାଳ, ଛାତି ଓ ପିଠିରେ ଚାରିଆଡ଼େ ଚନ୍ଦନର ଚିତା ନାଉଛି । ଏ ସବୁ ଦେଖିଲେ ମନେହେବ ବୁଢ଼ା ଯିମିତି ଚିତ୍ରିତ ମିରିଗଟିଏ । ସେଇଭଳି କିଛି । ସନ୍ଧ୍ୟାବେଳେ ବୁଢ଼ା ହରି ସିଂ ଖଞ୍ଜଣିଟାଏ ଧରି ଡବ ଡବ ଶବ୍ଦରେ ଗାଁଟାକୁ କମ୍ପେଇ ଦିଏ । ରାତି ଦଶ ନାଇଁ କି ବାର ନାଇଁ ମନବୋଧ ଚଉତିଶାଠୁ ଆରମ୍ଭ କରି ରେକର୍ଡ଼ ଗୀତ 'ଏକା ତୋ ଭକତ ଜୀବନ'କୁ ବି ଦୋହରାଉଛି ।

ବୋଧକରୁ, ଏ ସବୁ ଦେଖି ସ୍ୱୟଂ ହରି ବୁଢ଼ା ଉପରେ ଶାନ୍ତି ପଡ଼ିଗଲେଣି ।

ମଫସଲ ଗାଁକୁ ଆସିବା ପରେ ବୁଢ଼ା ତାର ଯେଉଁ ଜମି ଦୁଇମାଣ ଥିଲା, ଭାଗରେ ଲଗେଇ ଦେଇଥିଲା । ଘରେ ବସି ଧାନ ପାଏ ଓ ପେନ୍‌ସନ୍ ଟଙ୍କାରେ ଲୁଗାପଟା ଲୁଣତେଲ

ଖର୍ଚ୍ଚ ଚଳିଯାଏ । କାଶ ଟିକେ ଧରିବାରୁ ବୁଢା ଟିକିଏ ଅଫିମ ଖାଉଥିଲା । ଅବଶ୍ୟ ସବୁ ଏକ ପ୍ରକାର ଚଳିଯାଉଥିଲା । ନିଅଣ୍ଟ ପଡ଼େ ନାହିଁ କି ବଳେ ନାହିଁ ।

କିନ୍ତୁ ଏବେ ପରିସ୍ଥିତି ଟିକେ ନିଆରା । ଦରଦାମ୍ ହୁହୁ ହୋଇ ବଢ଼ି ଚାଲିଛି । ଲୁଗାପଟା, ଲୁଣ ତେଲ ଖର୍ଚ୍ଚ ପାଇଁ ବୁଢାକୁ ମିଳୁଥିବା ପେନ୍‌ସନ୍ ଟଙ୍କା ଯଥେଷ୍ଟ ନୁହେଁ । ତେଣୁ ସଟ୍‌କଟ୍‌ରେ ମାରିଦେବା ଲାଗି ବୁଢାର ଓଜର ନାଇଁ କି ଆପତ୍ତି ନାହିଁ । ହେଲେ ନିଉଛୁଣା ଅଫିମ ଅଭ୍ୟାସଟାକୁ ତ ଆଉ ଛାଡ଼ିଲେ ଚଳି ହେବ ନାହିଁ । ସେଥିପାଇଁ ପେଟରୁ କାଟି ବେଳେବେଳେ ବୁଢା ଅଫିମ ଖରଚ ଚଳାଏ ।

ଅବଶ୍ୟ ହରିଙ୍କ କୃପାରୁ ବୁଢା ବେଶ୍ ଆନନ୍ଦରେ ଅଛି । ଧାନ ବିଲ ବୋଲି ଏକ ଚକିଆ ଦୁଇମାଣ । ଦଇବ ବଳକୁ ବୁଢା ଜମି ପାଖରୁ କିଛି ଦୂର ଛାଡ଼ି ସରକାରୀ କେନାଲ ଖୋଳା ହୋଇ ପାଣି ଚାଲିଲାଣି । କାହା ମୁଣ୍ଡରେ ନଳିତା ବିଡ଼ା ହେଲେ କଣ ହେଲା ବୁଢା ଯେମିତି କ୍ଷୀରିହାଣ୍ଡିରେ ହାତ ପୂରାଇ ଦେଇଛି । ଯାହା ନାଆଁକୁ କେନାଲକୂଳିଆ ଜମି । ଗୋଟେ ଦିଟା ନୁହଁ ତିନି ତିନିଟା ଫସଲ ବର୍ଷକୁ । ତେଣୁ ବୁଢାର ଦକ ନାହିଁ । ଶାରଦ ପରେ ଡାଇଚୁଙ୍ଗ୍ ନ ହେଲେ ଜୟା, ରତ୍ନା । ତା ପରେ ରବି ଫସଲ ବି ବେଶ୍ ଉତୁରୁଛି ସେଇ ଜମିରୁ । ବୁଢାର ଭାଗ୍ୟ ପୁଣି ଲେଉଟି ଆସିଲା ଜାଣ ।

ହେଲେ, ଏଇ ସୁଖ ମୁହୂର୍ତ୍ତବେଳେ ବୁଢୀକଥା ମନେ ପଡ଼ିଯାଏ ହରି ସିଂର । ପର୍ବପର୍ବାଣୀରେ ଗାଁରେ ନାତୁଣୀ କି ଝିଆରୀ ବୋହୂମାନେ ପିଠା ସବୁ ଦେଇଯାନ୍ତି । ସିମିତି ଥୁଆ ହୋଇଥାଏ । ମନ ଭଲ ଲାଗେ ନି । ଖଟିଆ ଉପରେ ଶୋଇ ଗଡ଼ପଡ଼ ହୁଏ । ତଥାପି ନିଦ ଆସେନି ଆଖିକୁ । ଆଖି ଆଗରେ ଭାସିଉଠେ ଗୋପାଳର ରୂପ । ଏକୋଇର ବଳା ବିଶିକେଶନ । କୋରଡ଼ିଆ ଆଖି ଭିତରୁ ଝରଝର ହୋଇ କେଇବୁନ୍ଦା ପାଣି ବହିଯାଏ ଟାକୁଆ ଗାଲ ଉପରେ ସିଆର କାଟି । ପୁଣି ମନେ ପଡ଼ିଯାଏ । ବୁଢା ମୁହଁ ପୋଛିଦିଏ ଛିଣ୍ଡା ମସିଆ ଗାମୁଛାରେ । କାନ୍ଦେ ନାହିଁ ଗୋପାଳର କାଳେ ଅମଙ୍ଗଳ ହେବ ବୋଲି ।

ହରି ସିଂର ଭାବନାର ଖିଅ ଲମ୍ବିଯାଇଥାଏ । ହେଇଟି ଭଳି ମନେ ପଡୁଛି । ସେ ଦିନ ପୋଷ୍ଟ ମାଷ୍ଟର ନିଜେ ସଫା ସଫା ଶୁଣେଇ ଦେଲେ ତାକୁ ପଞ୍ଚାବନ ବର୍ଷ ବୟସ ହୋଇ ଯାଇଛି, ଆଉ ଚାକିରି କରିପାରିବ ନି । ପେନ୍‌ସନ୍ ପାଇବ । କଥାଟା ଶୁଣି ପ୍ରଥମେ ତା ମୁଣ୍ଡ ଝାଉଁ ଝାଉଁ କରିପକେଇଲା । ମନେହେଲା ପାଦତଳ ମାଟି ଯିମିତି ଖସି ଯାଉଛି ତଳକୁ, ଆହୁରି ତଳକୁ । ସବୁ ମୂଳରେ ସେଇ ଗୋଟିଏ ସ୍ୱପ୍ନ; ସଂସାର ଚଳିବ କିପରି ? ସଂସାର ଯାହା ହେଉ ଗୋପାଳର ଯେ ପଢା ବନ୍ଦ ।

ଉପାସ ଭୋକେ ଏତେଦିନ ଧରି ପୁଅକୁ ପାଠ ପଢେଇ ଆସିଛି ବୁଢା । ଖାସ୍ ସେଇଥି ଲାଗି କେତେଥର ସେ ପୋଷ୍ଟମାଷ୍ଟର ବାବୁଙ୍କ ଘରକୁ ନ ଯାଇଛି । ବାବୁଙ୍କ ବସାରେ ମୁକରିର ଚାକର ଥିଲେ ବି ଦୁଇ ଚାରିଟା କାମ କରିଦେଇ ଆସିଛି ।

ମିଠା କଡ଼ା ଗୁଡ଼ାଖୁ ସଜେଇ ଦେଇ ବାବୁଙ୍କ ହାତରେ ଧରେଇ ଦେଇଛି । ଆଉ ସେଇ ସେବା ବଳରେ, ଉପାସ ଭୋକରେ ବି ଗୋପାଳକୁ ପାଠ ପଢ଼େଇ ସାହେବ ବନେଇଛି । ଗୋପାଳ ବି ସେତେବେଳେ କମ୍ ହିମ୍ମତ୍ ଦେଇନି ବୁଢାକୁ : ବାପା, ଧାର୍ କରଜ କରି ମତେ ପଢାଅ, ଚାକିରି କରି ଶୁଝିବି ।"

ଏବେ ବୁଢା ନିଜକୁ ନିଜେ ଭର୍ତ୍ସନା କରେ । ବର୍ତ୍ତମାନ ସର୍ବସ୍ୱ ଲୋକ ଉପସ୍ଥିତ ସୁଖ ବା ଦୁଃଖରେ ବିମୋହିତ ହୋଇପଡ଼ିଥାନ୍ତି । ଭବିଷ୍ୟତ ବିଧାତା ତାଙ୍କ ପାଇଁ କଣ ବିଧାନ କରୁଛନ୍ତି, ତେଣିକି ଥରେ ହେଲେ ଅନେଇବା ଦରକାର ମଣନ୍ତି ନାହିଁ ।

ମକ୍ରାମପୁର ପୋଷ୍ଟ ଅଫିସ୍‌ରୁ ଗୋପାଳ ବାବୁଙ୍କର କଟକ ସଦର ପୋଷ୍ଟ ଅଫିସ୍‌କୁ ବଦଳି ହୋଇ ସାରିଲାଣି । ମଫସଲରୁ ସହରକୁ ପୁଣି ବାପା ଯେଉଁ ଅଫିସ୍‌ରେ ହେଡ୍ ପିଅନ ହୋଇ କିଛି ବର୍ଷ ପୂର୍ବେ ଦିନକୁ ଅନ୍ୟୁନ ଚାଳିଶିରୁ ପଚାଶଟି ସଲାମ ଦେଉଥିଲା ଗୋପାଳ ବାବୁ ଦିନକୁ ସେଥିରୁ ହାରାହାରି ଅର୍ଦ୍ଧାଧିକ ଅସୁଲ କରି ସାରିଲେଣି । ମକ୍ରାମପୁରରୁ ଆସି କଟକ ସଦର ପୋଷ୍ଟ ଅଫିସରେ ଗୋପାଳବାବୁ ବର୍ତ୍ତମାନ ଖୋଦ୍ ଇନ୍‌ସପେକ୍ଟର ସାହେବ । ଏସବୁ ମୂଳରେ ଅବଶ୍ୟ ତାଙ୍କର ପରିଶ୍ରମ, ଅଧ୍ୟବସାୟଟା କାମ କରିଛି ।

ମାଇନର ଶ୍ରେଣୀରୁ ଉଠି ଉଠି ଉତ୍କଳ ବିଶ୍ୱବିଦ୍ୟାଳୟ ଅଧୀନରେ କରେସପଣ୍ଡେନ୍‌ସ କୋର୍ସରେ ଡିଗ୍ରୀଟାଏ ହାସଲ କରିବାକୁ ସକ୍ଷମ ହୋଇଛନ୍ତି । ତାଙ୍କ ଟେବୁଲ ଉପରେ ଗୋଟିଏ ନାମ ଫଳକ ରଖାଯାଉଛି ଯାହାର ଲାଞ୍ଜ ଆଡ଼କୁ ଧଳା ରଙ୍ଗର ବି.ଏ. ଏବଂ ବନ୍ଧନୀ ଭିତରେ 'ଉତ୍କଳ' ବୋଲି ସ୍ପଷ୍ଟଭାବେ ଲେଖାହୋଇ ଜକ୍ ଜକ୍ କରୁଛି ।

ଗୋପାଳବାବୁଙ୍କର ଦରମା ବି ଏବେ କମ୍ ନୁହେଁ । ତିନି ଅଙ୍କ ବିଶିଷ୍ଟ ଆଖି ଦୃଶିଆ । ଚାରିଅଙ୍କ ଛୁଇଁବାକୁ ଯାହା କେତୁଟା ପାହାଚ ବାକି । ଗୋପାଳବାବୁ ବଡ଼ ଭାଗ୍ୟବାନ ଲୋକ । ତାଙ୍କ ସାଙ୍ଗର ଆଉ ଅନେକ ସବ୍ ପୋଷ୍ଟମାଷ୍ଟରରୁ ହିଡ଼ ଡେଇଁ ପାରି ନାହାନ୍ତି ଏଯାକେ । ମୁହଁ ମାଡ଼ି ପଡ଼ି ରହିଛନ୍ତି । ହେଲେ ଗୋପାଳବାବୁଙ୍କର ମନ ଟାଣ । ଶିବଙ୍କ ମଥାରେ ବେଲପତ୍ର ଚଢିବା ବନ୍ଦ ହେଇଯିବ ପଛେ ଗୋପାଳବାବୁଙ୍କ ଅଫିସ୍ କାମ ବନ୍ଦ ହେବ ନାହିଁ । ବାପ ଗୁଣେ ପୁଅ । ଅବଶ୍ୟ ଅନେକ ଲୋକ ପରିଶ୍ରମ କରୁଛନ୍ତି କିନ୍ତୁ ଫଳ ଫଳୁଛି କେତେକ ? କପାଳକୁ ନୟନବାବୁଙ୍କ ଦୟା ଆଉ ଗୋପାଳବାବୁଙ୍କ ପ୍ରାର୍ଥନା ଠିକ୍ କାମ କରିଛି ।

ମିଷ୍ଟର ନୟନ କିଶୋର ବର୍ମା । ଗୋରା ହୋଇ ଡେଙ୍ଗା ଲୋକ ଜଣକ । ମଜବୁତ୍ ଚେହେରା । ଛାତିରେ କେଉଁଏ ବାଳ, ପ୍ରାୟ ଧଳା ପଡ଼ିଗଲାଣି । ହେଲେ ପଥିରେ ଅଛନ୍ତି । ତେଣୁ ଦକ ନାହିଁ । ସହଜେ ପୋଷ୍ଟାଲ ସୁପରିଟେଣ୍ଡେଣ୍ଟ । ବଡ଼ ସାହେବ । ଶହ ଶହ ସଲାମ୍ । ହେଲେ ଗୋପାଳ ପ୍ରତି ତାଙ୍କର ଅଶେଷ ଦୟା । ପିଲାଟାର ଚାଲିଚଳଣ, କଥାବାର୍ତ୍ତାଠୁ ଆରମ୍ଭ କରି ଫାଇଲ୍ ପତ୍ରରେ ବି କୋଉଠି ଟିକେ ଖୁଣ ନାହିଁ । ସେଇଥି ପାଇଁ ବୋଧହୁଏ ।

ଗୋପାଳବାବୁ ବି ବଡ଼ ହୁସିଆର ଲୋକ । ଚାକିରି ଜୀବନର ଅଭିଜ୍ଞତା ଆସିଗଲାଣି । ସହକର୍ମୀଙ୍କୁ ଦେଖିବା ମାତ୍ରେ ହ୍ୟାଲୋ, ହାଉ ଡୁ ୟୁ ଡୁ ପର୍ଯ୍ୟନ୍ତ ସବୁକିଛି । କାହାସହ ମନାନ୍ତର ବି ନଥାଏ ତାଙ୍କର । ବେଳେବେଳେ କାହାର ଦରମା ନ ମିଳିଲେ ଅଥବା ସ୍ତ୍ରୀ ଲାଗି ଶାଢ଼ୀ କିଣିବାରେ ଟିକେ ବେଶୀ ଖର୍ଚ୍ଚ ହୋଇଗଲେ ଗୋପାଳଙ୍କ ପାଖକୁ ଧାର ସୂତ୍ରରେ ଦଶ କୋଡ଼ିଏ କିମ୍ବା ପଶିଶ ପଚାଶ ନେଇଥାନ୍ତି । ଗୋପାଳବାବୁ ତ ସହଜେ କାହାକୁ ମନାକରି ପାରନ୍ତି ନାହିଁ ।

କଟକ ସହର ସହ ତାଙ୍କର ପିଲାଦିନରୁ ପରିଚୟ । ହେଲେ ସେତେବେଳେ ଏତେ ଗାଡ଼ି ମଟର ତ ନଥିଲା । ନ ଥିଲା ଏତେ କୋଠାବାଡ଼ି । ଏବେ ତ ଇଞ୍ଚେ ବୋଲି କୋଉଠି ଜାଗା ନାହିଁ । ଖାଲି ଯାହା କାଠଯୋଡ଼ିଟା ପୂର୍ବଭଳି ରହିଛି ସେମିତି ।

କଟକ ସହରକୁ ବଦଳି ତାଙ୍କର ଅନେକ ଦିନ ହେଲା ହୋଇଗଲାଣି । ତଥାପି ଘର ଖଣ୍ଡେ ଭଡ଼ାରେ ମିଳିନାହିଁ ଏପର୍ଯ୍ୟନ୍ତ । ଦରମା ସାଙ୍ଗକୁ ଘରଭଡ଼ା ଯାହା ମିଳୁଛି ସେ କିଛି ନୁହେଁ । ଗୋପାଳବାବୁ ଲଜିଂରେ ରହୁଛନ୍ତି । ହୋଟେଲକୁ ଯାଉଛନ୍ତି । ଅବଶ୍ୟ ଦୁହିଁଙ୍କ ଭିତରେ ଦୂରତାଟା ବେଶୀ ନୁହଁ ।

ନୟନବାବୁ ବଡ଼ ଦରଦୀ ଲୋକ । ଗୋପାଳର ଏଇ ଦୁର୍ଦ୍ଦଶା କଥା ତାଙ୍କ କାନରେ ପଡ଼ିବାକୁ ବେଶୀ ସମୟ ଲାଗିଲାନି । ଦିନେ ଅଫିସ୍ ଛୁଟିହେବା ଆଗରୁ ପିଅନ ହାତରେ ଗୋପାଳବାବୁଙ୍କୁ ଡକେଇ ପଠେଇଲେ । ଗୋପାଳବାବୁ ମିଷ୍ଟର ବର୍ମାଙ୍କ ଡାକରା ପାଇ କିଛି ଭୟ ଓ କିଛି ସାହସ ରଖି କୋଠରୀ ଭିତରକୁ ପଶିଲେ । ଯେତେହେଲେ ତ ତାଙ୍କର ସାଙ୍ଗମାନେ ସେଇ ସବ୍ ପୋଷ୍ଟମାଷ୍ଟରରେ ପଡ଼ି ରହିଛନ୍ତି । ମିଷ୍ଟର ବର୍ମା ନ ଥିଲେ ଇନ୍‌ସପେକ୍‌ଟର କିଏ ଆଉ ଗୋପାଳ ଚରଣ ସିଂ କିଏ ?

ଗୋପାଳବାବୁଙ୍କୁ ଚଉକିରେ ବସିବାକୁ ନିର୍ଦ୍ଦେଶ ଦେଲେ ମିଃ ବର୍ମା । ଚା ଆସିଲା । ଗୋଟେ ଜରୁରୀ ଫାଇଲରୁ ମୁହଁ କାଢ଼ି ବର୍ମା ସାହେବ ଗୋପାଳ ବାବୁଙ୍କୁ ଚାହିଁଲେ ଚଷମା ଫାଙ୍କରୁ । ଗୋପାଳବାବୁ ନୀରବ ଆଗଭଳି ।

ଏଣୁ ତେଣୁ ଅନେକ କଥା ସେଦିନ ପଡ଼ିଲା । ଗୋପାଳ ବାବୁଙ୍କ ଦୁର୍ଦ୍ଦଶା ପୁଣିଥରେ ଶୁଣିସାରି ବର୍ମା ସାହେବ ଦୀର୍ଘ ନିଃଶ୍ୱାସଟାଏ ଛାଡ଼ିଲେ । ଯା ହେଉ କଥାଟା ସୁଧୁରିଯିବାକୁ ବେଶୀ ସମୟ ଲାଗିଲାନି । ସେଇଦିନ ରାତିରେ ମିଃ ବର୍ମାଙ୍କ ଘରୋଇ ଚାକର ଓ ଗୋପାଳବାବୁ ରିକ୍ସାରେ ସବୁ ଜିନିଷପତ୍ର ବୋହିକରି ନେଇଗଲେ । ବିଶେଷ କଷ୍ଟ ପଡ଼ିଲାନି ।

ମିଃ ବର୍ମା ବୁଢା ହୋଇ ଆସିଲେଣି । ଚାକିରି ଜୀବନ କାଳରେ ସେ ଆଉ ଯାହା କରିଥାନ୍ତୁ ନା କାହିଁକି ବକ୍‌ସି ବଜାରରେ ଏଇ ଦୁି ମହଲାର କୋଠାଘରଟି ତାଙ୍କର ଆଖି ଦୃଶିଆ କୀର୍ତ୍ତି । ତଳ ମହଲାଟି ଭଡ଼ା ଲାଗେ । ଉପର ମହଲାଟିରେ ତାଙ୍କ ପରିବାର । ପରିବାର ବୋଇଲେ ମାତ୍ର ତିନିଜଣ । ମିଷ୍ଟର ନୟନ କିଶୋର ବର୍ମାଙ୍କ ସ୍ତ୍ରୀ ଅନେକ ଦିନରୁ ସଂସାର ଛାଡ଼ିଛନ୍ତି । ଚାକର ଓ ଝିଅ ମାନୀକୁ ନେଇ ତାଙ୍କ ପରିବାର । ଛୋଟ ଓ ସୁଖୀ ପରିବାରଟିଏ । ଘରଭଡ଼ାରୁ ଯେଉଁ ଟଙ୍କା ମିଳେ ମାନୀର ଭବିଷ୍ୟତ ଜୀବନ ଲାଗି ଆପେ ମିଃ ବର୍ମା ଡ଼ାକଘରେ ଡ଼ିପୋଜିଟ୍ କରି ଦିଅନ୍ତି । ମାନୀ ମଧ୍ୟ ଏବେ ସ୍କଲାରସିପ୍ ପାଉଛି ।

ମିଷ୍ଟର ବର୍ମା ଅନ୍ୟ କାହାକୁ ଘରଭଡ଼ା ଦେବାକୁ ନାରାଜ । କାରଣ ଟୋକାଟାକେଳିଆଙ୍କୁ ଘରଭଡ଼ା ଦେଲେ ସମ୍ଭାଳିବା ମୁସ୍କିଲ । ହେଲେ ଗୋପାଳବାବୁଙ୍କ କଥା ନିଆରା । ସେ ତାଙ୍କୁ ଜାଣନ୍ତି ।

ଗୋପାଳବାବୁ ମିଷ୍ଟର ବର୍ମାଙ୍କ ଘରେ ରହିବା ଛମାସରୁ ଅଧିକ ହେଲାଣି । କ୍ୱଚିତ୍ ଦୁହିଁଙ୍କର ଭେଟ ହୁଏ । ରାତି ଦଶରେ ଗୋପାଳବାବୁ ବସାକୁ ଫେରନ୍ତି । ହୋଟେଲରେ ଖାଇକରି ଆସିଥାନ୍ତି । ଲାଇଟ୍ ଅଫ୍ କରି ଆରାମରେ ଖଟ ଉପରେ ଗଡ଼ି ପଡ଼ନ୍ତି । ଅଥଚ ବସାକୁ ଆସିବା ପୂର୍ବରୁ ସାଙ୍ଗମାନଙ୍କ ସହ କ୍ୟାଣ୍ଟିନ୍‌ରେ ଚା ପିଅନ୍ତି, ରାଜନୀତି ଚର୍ଚ୍ଚା କରନ୍ତି ନଚେତ୍ ମନ ହେଲେ ଗୋଟେ ଅଧେ ଫିଲ୍ମ ଚାଲିଯାଆନ୍ତି ।

ବେଳେବେଳେ ସହରରେ ଦୀପାବଳୀ କି ଦୁର୍ଗାପୂଜା ବେଳକୁ ବର୍ମା ସାହେବଙ୍କ ଘରେ ପିଠାପଣାର ଆୟୋଜନ ହୁଏ । ରାତି ଦଶ ପରେ ଗୋପାଳବାବୁ ବସାକୁ ଫେରିବାମାତ୍ରେ ବର୍ମା ସାହେବଙ୍କ ଝିଅ ମାନୀ ଶଙ୍ଖ ପ୍ଲେଟରେ କିଛି ରାଜଭୋଗ ନ ହେଲେ ସନ୍ଦେଶ ଆଣି ଠିଆହୁଏ । ଗୋପାଳବାବୁ ମନାକରିପାରନ୍ତି ନାହିଁ । କାଳେ ବର୍ମା ସାହେବ ମନଦୁଃଖ କରିବେ ବୋଲି । ବାହାରୁ ଖାଇକରି ଆସିଥାନ୍ତି । ତେଣୁ ସକାଳ ଜଳଖିଆ ପାଇଁ ସେଇଠି ରଖି ଦିଅନ୍ତି । ପରଦିନ ଅଫିସ୍ ଯିବା ଆଗରୁ ଚାକର ଆସି ପ୍ଲେଟ ନେଇଯାଏ । କିଛି ଭଲ ଜିନିଷ ହେଲେ ମାନୀ ହାତରେ ପଠେଇବା ବର୍ମା ସାହେବଙ୍କ ସ୍ୱଭାବ । ଏଇଟା ପ୍ରାୟତଃ ବଡ଼ ଘରର ଚଳଣି ।

ବେଶ୍ କିଛି ଦିନ ବିତିଗଲାଣି ଯା ଭିତରେ । ମିଃ ବର୍ମା ସାହେବଙ୍କ ପରିବାର ସହ ଗୋପାଳବାବୁଙ୍କର ସମ୍ପର୍କ ମଧୁରରୁ ମଧୁରତର ହେବାରେ ଲାଗିଛି । ମିଃ ବର୍ମାଙ୍କ ଏକମାତ୍ର କନ୍ୟା ମାନୀ ବର୍ମା ସରକାରୀ ବାଳିକା ହାଇସ୍କୁଲରେ ପଢେ । ଭଲ ପଢେ, ସେଥିପାଇଁ କ୍ଲାସରେ ତାର ନାଁ ଅଛି । ଏଥି ସାଙ୍ଗକୁ ବାପାଙ୍କର ପଦମର୍ଯ୍ୟାଦାଟି ବେଶ୍ ସାହାଯ୍ୟ କରେ ।

ମାନୀ ବର୍ମାଙ୍କର ଭଲ ନାଁ କୁମାରୀ ମନସ୍ୱିନୀ ବର୍ମା । ହେଲେ ତାଙ୍କୁ ସମସ୍ତେ ଏଇ ମାନୀ ବର୍ମା ନାଁରେ ଡ଼ାକନ୍ତି । ଖୁବ୍ କମ୍ ଲୋକ ତାଙ୍କୁ ଦୁସୁରା ନାମରେ ଜାଣିଛନ୍ତି । ମାନୀ ବର୍ମାଙ୍କ ବୟସ ପାଖେଇ ଆସିଲାଣି । ଗୋରା ରଙ୍ଗ । ଟିକିଏ ଖରା ବାଜିଲେ ମୁହଁରୁ ଝାଳ ବାହାରି ପଡ଼େ । ସେଥିଲାଗି ପ୍ରସାଧନୀ ଟିକେ ଅଧିକ ମାତ୍ରାରେ ବ୍ୟବହାର କରନ୍ତି । ବାପାଙ୍କର ଓଜର କି ଆପତ୍ତି ନଥାଏ । ଗୋଟିଏ ବୋଲି ଝିଅ ତ !

ମାନୀ ବର୍ମା ପଞ୍ଜାବି ଓ ସାଲଓ୍ୱାର ପିନ୍ଧନ୍ତି, ଦିହକୁ ମ୍ୟାଚ୍ କଲାଭଳି । ଛାତିରେ ବହି ଜାକି ରିକ୍ସାରେ ଉଠନ୍ତି । ଗଲାବେଳେ ଗୋପାଳବାବୁଙ୍କ ଘରଆଡ଼େ ଟିକେ ଚାହିଁଦେଇ ଚାଲିଯିବାକୁ ଭୁଲିଯାଆନ୍ତି ନାହିଁ । ସେତେବେଳେ ଗୋପାଳବାବୁ ଇଂରାଜୀ ପତ୍ରିକାଟେ ବସି ପଢୁଥିବେ ନୋଇଲେ ପାଲ୍‌ମୋଲିଭ୍ କ୍ରିମ୍ ମାରି ମାଖୁନା ଖିଅରଟେ ହେଉଥିବେ । ମାନୀ ବର୍ମା ଏସବୁ ଦେଖି ହସି ପକାନ୍ତି । ଯେତେହେଲେ କୁଆଁରୀ ମନ ତ !

ଏବେ ଗୋପାଳବାବୁଙ୍କ କୋଠରୀ ଆଡ଼କୁ ମାନୀ ବର୍ମା ବୁଲି ଆସନ୍ତି । ତୁଚ୍ଛାଟାରେ ନୁହେଁ । ଗଣିତ ବହି ନ ହେଲେ ଇଂରାଜୀ ବ୍ୟାକରଣ ବହି ଧରି ଆସିଥିବେ କିଛିଟା ବୁଝିବା ଉଦ୍ଦେଶ୍ୟରେ । ଗୋପାଳବାବୁ ବି କୃପଣ ହୁଅନ୍ତି ନାହିଁ ।

ଏବେ ପ୍ରାୟତଃ ଗୋପାଳବାବୁ ବାହାରେ ବେଶୀ ସମୟ ରହୁ ନାହାନ୍ତି । ଅଫିସ୍ ଛୁଟି ପରେ ବସାକୁ ଫେରି ଆସନ୍ତି, ଅନ୍ୟ କାମରେ ମନ ଦିଅନ୍ତି । କିଛି ନ ହେଲେ ଗୋଟେ ଗୀତ ଗୁଣୁଗୁଣୁ ହୁଅନ୍ତି । ଯାହାର ସୁର ନ ଥାଏ କି ତାଳ ନଥାଏ ।

ଆଗେ ମାନୀ ବର୍ମା ଗୋପାଳବାବୁଙ୍କ କୋଠରୀରେ ପଶିବାକୁ ଅନୁମତି ଲୋଡୁଥିଲେ । ଏବେ ସେଇଟା ଦରକାର ପଡ଼େନି । ବେଳେବେଳେ ମାନୀ ବର୍ମାଙ୍କୁ ଘଣ୍ଟା ଘଣ୍ଟା ଧରି ଗାର କାଟି ଗୋପାଳବାବୁ ଜ୍ୟାମିତି ବୁଝାନ୍ତି । ସମୟ ଓ ଦୂରତା, ସୁଧକଷା ଠାରୁ ଆରମ୍ଭ କରି, ତୈଳାକ୍ତ ବାଉଁଶରେ ମାଙ୍କଡ଼ର ଆରୋହଣ ଅବରୋହଣ ସମ୍ପର୍କୀୟ ସୂତ୍ର ମନେ ରଖିବାକୁ କୁହନ୍ତି । ଚାକର ଟୋକା ମାନୀ ବର୍ମାଙ୍କୁ ଖାଇବା ଲାଗି ଦୁଇ ଚାରିଥର ତାଗିଦା କରିବା ପରେ ଯାଇ ପଢା ସରେ । ତଥାପି ପାଠ ସରି ନଥାଏ । ଆଗାମୀ କାଲିପାଇଁ ରହିଯାଇଥାଏ ଆହୁରି କିଛି । କିଛି ବୋଇଲେ ଆଉ କଣ ?

ଦିନକର ଘଟଣା । ଗୋପାଳବାବୁ ମାନୀ ବର୍ମାଙ୍କୁ ଅଙ୍କ ବୁଝାଇବାକୁ ଯାଉଥାନ୍ତି । ବଡ଼ କଡ଼ା ଅଙ୍କଟାଏ । ଠିକ୍ ସେତିକିବେଳକୁ ଗୋପାଳବାବୁଙ୍କ କଲମରୁ କାଳିତକ ସରିଗଲା । ଗୋପାଳବାବୁଙ୍କ ମୁଡ୍ ଭାଙ୍ଗିଯିବା ଉପରେ । ରାଗରେ ଚିଡ଼ି ଉଠିଲେ । ତା ସାଙ୍ଗକୁ ସେ ବି ତାଙ୍କ ପାଖରେ କାଳି ରଖି ନଥାନ୍ତି । ମାନୀ ବର୍ମା ବଡ଼ ଚତୁର । ସାଙ୍ଗେସାଙ୍ଗେ ଉପର ମହଲାକୁ ଦଉଡ଼ି ଯାଇ ତାଙ୍କ ଷ୍ଟଡିରୁମ୍‌ରୁ କାଳି ଘଡ଼ିଟାଏ ଧରି ଚାଲି ଆସିଲେ । ଗୋପାଳବାବୁ କଲମରେ କାଳି ଭର୍ତ୍ତିକରି ଏଣୁତେଣୁ କଣ ଗୁଡ଼ାଏ ଗାରେଇ ପକେଇଲେ ସେଇ ଖାତାରେ । ତା ତଳେ ନିଜ ନାଆଁଟା ବି ଲେଖି ପକେଇଲେ ବିନା କାରଣରେ । ସବୁଥର କଲମରେ କାଳି ଭର୍ତ୍ତି କଲାବେଳେ ଏଇଟା ତାଙ୍କର ଅଭ୍ୟାସବଶତଃ ହୋଇଯାଏ । ତାପରେ ଅଙ୍କ କଷା ଗଲା । ଯଥାରୀତି ଯେ ଯାହାଁ ଠାରୁ ବିଦାୟ ନେଲେ । ମାତ୍ର ଘଟଣା ଭିନ୍ନ ଆକାର ଧାରଣ କରିଥିଲା ପରଦିନ । ସବୁଦିନ ପରି ମାନୀ ବର୍ମା ସ୍କୁଲକୁ ଗଲେ ସେଦିନ । କଥାଟା ଖୋଲତାଡ଼ କଲେ ମାନୀ ବର୍ମାଙ୍କର ଅନ୍ତରଙ୍ଗ ସାଙ୍ଗ ଦମୟନ୍ତୀ ମହାପାତ୍ର । ଦୁହେଁ ପରସ୍ପରକୁ ବଉଳ ବୋଲି ଡାକନ୍ତି । ଦମୟନ୍ତୀଙ୍କ ଘର ପୁରୀଆଡ଼େ । ବାପା କଟକରେ ଚାକିରି କରନ୍ତି ।

ଦମୟନ୍ତୀଙ୍କ ହାତରେ ସେତେବେଳକୁ ମାନୀ ବର୍ମାଙ୍କର ଅଙ୍କ ଖାତାଟା ପଡ଼ିଯାଇଥିଲା, ଯେଉଁଠି ଦସ୍ତଖତ କରିଥିଲେ ଖୋଦ୍ ଗୋପାଳବାବୁ । ଦମୟନ୍ତୀ ମହାପାତ୍ରେ ବଉଳକୁ ଜେରା କଲେ: ଏ ଗୋପାଳ ଚରଣ ସିଂ କିଏ କିଲୋ ? ତାଙ୍କ ସହ ତୋର ଚିହ୍ନା କେବେଠୁ ? କାଲି ରାତିରେ ଅଙ୍କ କିମିତି ହେଲା ?' ଏମିତି ଆହୁରି ଅନେକ କଥା । କଥା ମଝିରେ ମାନୀ ବର୍ମାଙ୍କ ବଉଳ ଓରଫ ଦମୟନ୍ତୀ ମହାପାତ୍ର ଖୁବ୍ ରାଗିଯାଇ ଖାତାଟାକୁ ତା ଆଡ଼କୁ ଫୋପାଡ଼ି ଦେଲେ ।

ମାନୀବର୍ମାଙ୍କୁ କଥାଟା ବୁଝିବାକୁ ବେଶୀ ଡେରି ହେଲାନି । ଗଲା ରାତିରେ ଗୋପାଳବାବୁ କଲମରେ କାଳି ଭର୍ତ୍ତି କରିବା ପରେ ତା ଅଙ୍କଖାତାରେ ଲେଖିଥିଲେ: ବାଇ ପୁଅ ବଡ଼ ଜାଲମ୍, ତୋଓ କାଳି ଘଡ଼ି ମୋ କଲମ ।"

ମାନୀ ବର୍ମା ଅବଶ୍ୟ ସେ କଥା ସେତେବେଳେ ପଢିଥିଲେ । ମାତ୍ର ଭିନ୍ନ ଅର୍ଥ କରିଥିଲେ । ସେତେବେଳେ ତାଙ୍କର ମନେ ହୋଇଥିଲା ଗୋପାଳବାବୁ ବଡ଼ ରସିକିଆ ତଥା କବି ଲୋକ । ଏପରିକି ଗୋପାଳବାବୁଙ୍କ କଲମରେ ତା କାଳି ରହିଥିବାରୁ ଗୋପାଳବାବୁ ତାକୁ ପ୍ରଶଂସା କରିଛନ୍ତି ବୋଲି ତାର ଧାରଣା ହୋଇଥିଲା । ମାତ୍ର କ୍ଷଣକ ଭିତରେ ସବୁ ଧାରଣା ପାଣି ଫୋଟକା ପରି ମିଳେଇ ଗଲା ।

ଦମୟନ୍ତୀ ମହାପାତ୍ର ନିଜେ ତ ଜାଣେ ଗୋପାଳବାବୁ ଅଙ୍କ ଖାତରେ ଲେଖିଥିବା ଗୀତଟା ପୁରୀର ଗୋଟେ ବୋଲି । ପୁରୀ ସହରର ପୁଅମାନେ ଝିଅମାନଙ୍କୁ ବେଳେବେଳେ ଖରାପ ମତଲବ ରଖି ଏମିତି କହିଥାନ୍ତି ! ଏଇଟା ଗୋଟେ ବାଜେ ନୁହେଁ ନିହାତି ବାଜେ କଥା । ଏଇ କଥାରୁ ଦମୟନ୍ତୀ ମହାପାତ୍ର ଗୋପାଳବାବୁଙ୍କ ସହ ମାନୀ ବର୍ମାର ବାଜେ ସମ୍ପର୍କ ଥିବା କଥା ସୂଚାଇ ଦେଲା । ଏକଥା ଶୁଣି, ମାନୀ ବର୍ମାର ମୁହଁ କଳାକାଠ ପଡ଼ିଗଲା ।

ସ୍କୁଲଛୁଟି ହେବା ପରେ ମାନୀ ବର୍ମା ସେଦିନ ଏକମୁହାଁ ଘରକୁ ଫେରିଲେ । ବହିପତ୍ର ସବୁ ଶେଯ ଉପରେ ଦୁଲ୍‌ଦାଲ୍ କରି କଚାଡ଼ି ଦେଇ ସେଇଠି ମୁହଁ ଜାକି ପଡ଼ି ରହିଲେ । ଚାକର ଟୋକା ଏମନ୍ତ ଦୃଶ୍ୟ ଦେଖି ଛାନିଆଁ । କଣ ହେଇଚି ଦେଇଙ୍କର ? ଯେତେ ଡାକିଲେ, ନେହୁରା ହେଲେ ବି ଉଁ କି ଚୁଁ କିଛି କହୁନାହାନ୍ତି । କାନ୍ଦି କାନ୍ଦି ଆଖିପତା ଗେଣ୍ଡାଭଳି ଫୁଲିଯାଇଥାଏ । ତକିଆରେ ମୁହଁକୁ ଜାକି ସେମିତି ସୁଁ ସୁଁ ହେଉଥାନ୍ତି ସେ । ସନ୍ଧ୍ୟାହେଲାରୁ ବର୍ମା ସାହେବ ବସାକୁ ଫେରିଲେ । ଚାକର ଟୋକା ପାଖରୁ ଖବର ପାଇ ମାନୀର ଶୋଇବା ଘରକୁ ଝପଟି ଗଲେ । ବହୁତ ସାକୁଲେଇଲେ ଘଟଣା କଣ ଜାଣିବା ପାଇଁ । ଅନେକ ସମୟ ପରେ କୋହକୁ ଚାପି ରଖି କୁମାରୀ ମାନୀ ବର୍ମା ଆପଣା ପିତାଙ୍କ ପାଖରେ ସମସ୍ତ ଗୁମର ଫିଟାଇ ଦେଲେ ।

ଏଣେ ତଳ ମହଲାରେ ସବୁଦିନ ଭଳି ଉତ୍କଣ୍ଠାର ସହ ଅପେକ୍ଷା କରିଥାନ୍ତି ସ୍ୱୟଂ ଗୋପାଳ ଚରଣ ସିଂ । ସମୟ କାଟୁଥାନ୍ତି । ହେଲେ ମାନୀ ବର୍ମା ତାଙ୍କ ପାଖକୁ ଆସି କହୁ ନ ଥାଏ : ଗୋପାଳ ଭାଇ, ଏ ଅଙ୍କଟା ବୁଝାଇ ଦିଅ । ଇଲୋ ମା-କି କଷ୍ଟ ଇଂରାଜୀ ପାଠ ସତେ !" କାନ ଭିତରେ ଖାଲି ମାନୀ ବର୍ମାର ସ୍ୱର ଗୁମୁରି ଉଠୁଥାଏ । ମନଟା ରବେଇ ଖବେଇ ହେଉଥାଏ । ଠିକ୍ ଏତିକିବେଳେ ଗୋପାଳ ବାବୁଙ୍କ ଘର ଭିତରକୁ ପଶିଆସିଲେ ବର୍ମା ସାହେବ । ଡାକବିଭାଗର ସୁପରିଟେଣ୍ଡେଣ୍ଟ ଖୋଦ୍ ନୟନ କିଶୋର ବର୍ମା, ଗୋପାଳବାବୁ ତାଙ୍କର ଅଧସ୍ତନ କର୍ମଚାରୀ । ସମ୍ମାନ ଦେଖାଇବା ଉଦ୍ଦେଶ୍ୟରେ ଖଟିଆରୁ ଉଠିଯାଇ ଲୁଙ୍ଗିର ଗଣ୍ଠିଟାକୁ କଷିଦେଲେ । ଦିହ ଉପରେ ହାତକଟା ଗଞ୍ଜିଟାଏ ସିମିତି ଲାଖିଥାଏ । ହଡ଼ବଡ଼େଇ ଯାଉ ଯାଉ ପାଖରେ ଥିବା ଚଉକିଟାକୁ ଆଣି ବର୍ମା ସାହେବଙ୍କୁ ବସିବା ପାଇଁ ଅନୁରୋଧ କଲେ । ବର୍ମା ସାହେବ ବସିଲେ ନାହିଁ । ସିମିତି ଭୂତଙ୍କ ଭଳି ଠିଆ ହୋଇଥାନ୍ତି ।

ଏହାର ମାତ୍ର ସପ୍ତାହକ ପରେ କୁମାରୀ ମାନୀ ବର୍ମା ହଠାତ୍ ଶ୍ରୀମତୀ ମନସ୍ୱୀନୀ ସିଂହକୁ କୁଦାମରି ପଳେଇ ଆସିଲେ । ସ୍କୁଲ ଗଲେ ନାହିଁ ଏବଂ ପଞ୍ଜାବି ସାଲ୍‌ୱାର ସବୁ

ଜଣେ ପଡ଼ୋଶିନିଙ୍କୁ ଯାଚିକରି ଦେଇଦେଲେ । କଚେରୀରେ ରେଜିଷ୍ଟ୍ରି ବିବାହ କରାହେଲା । ଅବଶ୍ୟ ସେଦିନ ସନ୍ଧ୍ୟାରେ ବର୍ମା ସାହେବଙ୍କ କୋଠିରେ ପାର୍ଟିର ଆୟୋଜନ ଖୋଦ୍ ଗୋପାଳ ବାବୁଙ୍କ ତରଫରୁ ହୋଇଥିଲା ଏବଂ ଜିରୋ ପାୱାର ଲିଟୁମାଳ କୋଠା ଉପରୁ ସାରା ରାତିଟା ହିଂଜଡ଼ାର ହସ ଭଳି ଝୁଲି ରହିଥିଲା । ଗୋପାଳବାବୁଙ୍କର ଅନ୍ୟ ଉପାୟ ନଥିଲା । ଶ୍ୱଶୁର ବୁଢା ଯେ ଏତେ ରାଗି, ସେ ପ୍ରଥମ ଥର ପାଇଁ ସେଦିନ ସନ୍ଧ୍ୟାରେ ଜାଣିଲେ । କିଏ ଜାଣେ ? ହୁଏତ ଆଗାମୀ ସକାଳୁ ତାଙ୍କ ଚାକିରିଟି ଗୋଲ୍ ହେଇ ଯାଇଥାନ୍ତା ନତୁବା ଜନାକାରୀରେ ପଡ଼ି ଜେଲ୍‌ରେ ଚକି ପେଷିବାକୁ ପଡ଼ିଥାନ୍ତା କିଛିଦିନ । ତାଛଡ଼ା ମାନୀ ବର୍ମାଠୁ ଅଧିକ ଝିଅଟେ କିଏ ଦେଇଥାନ୍ତା ଯେ ?

ଏବେ ଅଫିସ୍‌ରେ ଗୋପାଳ ବାବୁଙ୍କୁ ଢେର ଢେର ସଲାମ ମିଳେ। ସହଜେ ବର୍ମା ସାହେବଙ୍କ ଜୋଇଁ । ବିବାହ ପରେ ଗୋପାଳବାବୁ ସେହି ଘର ଛାଡ଼ି ଦେବାକୁ ଭାବିଲେ । ଅନ୍ୟତ୍ର ରହିବାକୁ ମନେ ମନେ ସୁଯୋଗ ଖୋଜୁଥାନ୍ତି । ଶଶୁରେ ତ ସର୍ବଜ୍ଞ । ଏକଥା ତାଙ୍କ କାନରେ ପଡ଼ିବା ମାତ୍ରେ ଦିନେ ଗୋପାଳଙ୍କୁ କହିଲେ, ତୁମେ ତ ମୋର ପୁଅ ହେଲ । ବାପ ପାଖରୁ ଯାଇ ଆଉ କେଉଁଠି ରହିବ ? ଜାଣିଛ, ମାନୀ ମୋର ଜୀବନ । ଗୋପାଳ ବାବୁ ନୀରବ ରୁହନ୍ତି । ମୌନେ ସମ୍ମତି ଲକ୍ଷଣମ୍ ।

ଏବେ ଶ୍ରୀମତୀ ମାନୀ ସିଂହଙ୍କୁ ଉପର ମହଲାକୁ ଯିବାକୁ ପଡ଼େନି । ଦରକାର ବି ପଡ଼େନି । ବେଳେବେଳ ଦରକାର ପଡ଼େ, ଯେତେବେଳେ ସହରରେ ଦୀପାବଳୀ କି ଦୁର୍ଗାପୂଜା ଆସେ । ବୁଢାବାପାଙ୍କୁ ପାଏସ୍ ଟିକିଏ, ନ ହେଲେ ଗାଙ୍ଗୁରାମ୍ ମିଷ୍ଟାନ୍ନରୁ କିଛି ଖୁଆଇ ଦେଇ ନିଜ ହାତରେ ପ୍ଲେଟ୍ ନେଇ ଆସନ୍ତି । ଏଇଟାତ ଆନ୍ତରିକତାର କଥା । ଆଉ କିଛି ନୁହେଁ ।

ସମୟତ ଆମ ତୁମ ଭଳି ବସିବା ଲୋକ ନୁହଁ । ହରଦମ୍ ଦଉଡୁଥାଏ । କେତେବେଳେ ୟା ଭିତରେ ଦୁଇଟି ବର୍ଷ ବିତିଗଲାଣି । କାହାରି ନଜର ନାହିଁ । ଗୋପାଳବାବୁ ଓ ମାନୀ ଦେବୀ ପରମ ସୁଖରେ କାଳାତିପାତ କରିବାକୁ ଲାଗିଛନ୍ତି । କାହାରି ବିଶେଷ କିଛି ପରିବର୍ତ୍ତନ ହୋଇନି, କେବଳ ମାନୀ ଦେବୀଙ୍କ ଶରୀରେ ଚର୍ବି ବୃଦ୍ଧି ଓ ବର୍ମା ସାହେବଙ୍କ ମନ ଭିତରର କିଛିଟା ଧାରଣାକୁ ବାଦ୍ ଦେଲେ । କଣ ଆଉ ହୋଇପାରେ ? ବର୍ମା ସାହେବଙ୍କ ୟା ଭିତରେ ବୟସ ବଢିଗଲାଣି । ରିଟାୟର୍ଡ ପାଇଁ ଆଉ କେଇଟା ଦିନ ବାକି । ତେଣୁ ଶେଷ ଜୀବନ ବେଳକୁ ଝିଅ ଜୋଇଁଙ୍କ ପାଖରେ ରହିବାକୁ ମନସ୍ଥ କରିବା ସ୍ୱାଭାବିକ । ଝିଅ ସିନା ନିଜର, ହେଲେ ସେତ ପରପୁଅ । ତାର ବା କଣ ଗରଜ ଅଛି ? ତା ଛଡ଼ା ବର୍ମା ସାହେବ ଜୀବନରେ କାହାର ଋଣୀ ହେବାକୁ ଚାହିଁ ନାହାନ୍ତି କେବେ । ତେଣୁ କାଳେ

କେତେବେଳେ କଣ ଘଟିଟିବ ସେଥିଲାଗି ସମସ୍ତ ସ୍ଥାବର ଅସ୍ଥାବର ସଂପତ୍ତି ଝିଅ-ଜୋଇଁଙ୍କ ନାମରେ ଉଇଲ୍ କରିଦେବା ଲାଗି ମନସ୍ଥ କରିଛନ୍ତି ।

ଝିଅ ଜୋଇଁ ତ ସବୁବେଳେ ମହାଖୁସ୍ । ଦିନେ ହେଲେ ମାନ ନାହିଁ ଅଭିମାନ ନାହିଁ । ଏମନ୍ତ ସୁଖୀ ପରିବାର ସଚରାଚର ଖୋଜି ପାଇବା ବିରଳ । ସ୍ୱାମୀଙ୍କର ଅଫିସ୍ ଫେରିବା ବାଟକୁ ଚାହିଁ ବସିଥାନ୍ତି ଶ୍ରୀମତୀ ମାନୀ ସିଂ । ପତିବ୍ରତା । ସ୍ୱାମୀଙ୍କର ବି ମାନୀ ଦେବୀଙ୍କ ଉପରେ ଗଭୀର ବିଶ୍ୱାସ । କବିଙ୍କ ଭାଷାରେ "ପ୍ରୀତି ଅଭେଦ ତାଙ୍କର ।"

ଦିନକର ଘଟଣା । ଅଫିସ୍ ଯିବା ପୂର୍ବରୁ ଖାଇ ବସିଥାନ୍ତି ଗୋପାଳବାବୁ । ପାଖରେ ବସି ସ୍ତ୍ରୀ ମାନୀ ଦେବୀ ପଙ୍ଖା କରୁଥାନ୍ତି । ଏଇ ସମୟଟି ଉପଯୁକ୍ତ ଭାବି ସ୍ତ୍ରୀ ମାନୀ ଦେବୀ ସ୍ୱାମୀଙ୍କୁ ଗୋଟେ କଥା ପଚାରିବେ ବୋଲି ଇଚ୍ଛା କଲେ । ସ୍ୱାମୀଙ୍କର ମଧ୍ୟ ସ୍ୱୀକୃତି ମିଳିଲା । ମାନୀ ଦେବୀ ଏଥର ସାହସ କଲେ ।

ସ୍ତ୍ରୀ କହିଥିବା କଥାଟା ଯୋଗୁଁ ଆଜି ଗୋଗାପଳ ବାବୁ ଅଫିସ୍‌ରେ କେଜାଣି କାହିଁକି ଶାନ୍ତିରେ ବସିପାରୁ ନାହାନ୍ତି । କାମରେ ମନ ଲାଗୁ ନାହିଁ । ସତରେ ଏତେଦିନ ଧରି ତାଙ୍କର କଥାଟା ମନେ ନ ଥିଲା । ଭୁଲାଯାଇଥିଲେ । ଆଗପଛ ବିଚାର ନ କରି ଦରଖାସ୍ତ ଲେଖିଲେ । ପନ୍ଦର ଦିନ ଛୁଟି ମଞ୍ଜୁର ହୋଇଗଲା । ଗୋପାଳବାବୁ ଆଶ୍ୱସ୍ତ ହେଲେ ।

ଶୀତଦିନର ସକାଳୁ ସକାଳୁ ଦୁଇକିଲୋ ସେଉ, ଏକ କିଲୋ ଅଙ୍ଗୁର, ଏକ ଡ଼ଜନ୍ ସୁରଙ୍ଗୀ କମଳା ଆଉ କେତେ ଜିନିଷ ସାଙ୍ଗକୁ ଗୋଟେ କାଶ୍ମୀର ଶାଲ୍ ଓ ନିଜ ବେଡ଼ିଂପତ୍ର ନେଇ ସ୍ୱାମୀ ସ୍ତ୍ରୀ ଦୁହେଁ ସେମାନଙ୍କ ଯାତ୍ରା ଆରମ୍ଭ କରିଦେଲେ ।

ମଫସଲ୍ ଗାଁ, ବସ୍‌ରୁ ଓହ୍ଲେଇ ଦୁଇ ମାଇଲ୍ ପାଦରେ ଚାଲି ଯିବାକୁ ପଡ଼େ । ରିକ୍ସା ମିଳେନା । ମିଳେନା ବି ବୋଝିଆ । ବସ୍‌ରେ ଚାରି ଘଣ୍ଟାର ବାଟ । ସ୍ତ୍ରୀଙ୍କ ଜିଦ୍‌କୁ ଭାଙ୍ଗି ନ ପାରି ଗୋପାଳ ବାବୁ ଗାଁକୁ ଯାଉଛନ୍ତି ବହୁବର୍ଷ ପରେ ।

ଏବେ ମଫସଲ ଗାଁରେ ଢେର୍ ଢେର୍ ପରିବର୍ତ୍ତନ ଦେଖିପାରୁଛନ୍ତି ଗୋପାଳବାବୁ । ପ୍ରାୟ କେତେଗୁଡ଼ିଏ ଅଚିହ୍ନା ମୁହଁ, ତା ସାଥିକୁ ତାଙ୍କ ଗାଁକୁ ଗୋଟେ ନାଲି ମୋରମ୍ ରାସ୍ତା ସିଧା ସଳଖ ପଡ଼ି ଗଲାଣି । ଆଉ ବିଶେଷ କିଛି ନାହିଁ । ତଥାପି ଇଲେକ୍‌ଟ୍ରିଟା ଯାଇଚି ।

ବସ୍‌ରୁ ଓହ୍ଲେଇ ଗୋପାଳ ବାବୁ ଓ ତାଙ୍କ ସ୍ତ୍ରୀ କିଛି ସମୟ ବସିଲେ । ସମୟ ପ୍ରାୟତଃ ମଧ୍ୟାହ୍ନ । ଘରେ ତ ଏକା ବୁଢ଼ାବାପ, ଆଉ କେହି ନାହାନ୍ତି । ତାପରେ ଏ ସମୟରେ ପହଞ୍ଚି ରୋଷେଇ କରିବା କାଠିକର ପାଠ । ହୋଟେଲରେ ଖାଇଦେଇ ଯିବାକୁ

ମନସ୍ଥ କଲେ । ମାତ୍ର ହୋଟେଲ କାହିଁ ? ନିକଟସ୍ଥ ଗୁଡ଼ିଆ ଦୋକାନରୁ କିଛି ତେଲ ଓ ମିଠା ଜିନିଷ ଗର୍ଭସ୍ଥ କରି ଦୁଇ ପ୍ରାଣୀ ଗ୍ରାମାଭିମୁଖୀ ହେଲେ ।

ଗାଁ କଡ଼ରେ କେନାଲ ଗଲାଣି । ସେକଥା ଗୋପାଳ ବାବୁଙ୍କୁ ଜଣା ନାହିଁ । ଜଣା ନାହିଁ ତାଙ୍କର ବାପା ଇହଲୋକରେ ନା ପରଲୋକରେ । ଏ କଥାଟା ମନେପଡ଼ିବା କ୍ଷଣି ତାଙ୍କ ମନଟା ଟିକେ ସେମେଟି ଗଲା, ଛାତି ତଳଟା ଟିକେ ଚହଲି ଯାଇ ଗରମ ବାମ୍ଫ ପୁଳାଏ ନାକପୁଡ଼ା ଦେଇ ପଦାକୁ ବାହାରି ଆସିଲା । କେନାଲ ପାରି ହୋଇ ଯିବାକୁ ପଡ଼େ । ଛୋଟ ପୋଲଟିଏ । ତାରି ଉପରେ ଲୁଙ୍ଗି ପିନ୍ଧି ବାଳ ରଖିଥିବା ଦୁଇ ଚାରିଟା ଟୋକା ଗପ ଜମେଇଛନ୍ତି । କଲେଜ ଟୋକାଙ୍କ ଭଳି ଜଣା ପଡୁଛନ୍ତି । ଏଇନେ ଧାନକଟା ଛୁଟି । ବାଟରେ ଆସିଲା ବେଳେ ଅନେକ ଲୋକ ମୁଣ୍ଡରେ ଧାନହଳା ବୋହି କରି ନେଉଥିବାର ସେ ଦେଖିଥିଲେ । ପୋଲ ଉପରେ ବସିଥିବା ଟୋକାଙ୍କ ଭିତରୁ ଜଣେ ତାଙ୍କୁ ଚିହ୍ନିପାରି ନମସ୍କାରଟେ ପକେଇ ଦେଲା । ଗୋପାଳବାବୁ ସ୍ୱଭାବସୁଲଭ ଭଙ୍ଗୀରେ "କଣ ସବୁ ଭଲ ତ" କହି ଆଗକୁ ପାଦ ପକେଇଲେ । ସାଙ୍ଗରେ ସ୍ତ୍ରୀ, ମୁଣ୍ଡରେ ଓଢଣା ବେଶୀ ନୁହେଁ କି କମ୍ ନୁହେଁ ।

ଭାଗ୍ୟକୁ ଘରଟା ଚିହ୍ନି ପକେଇଲେ ଗୋପାଳବାବୁ । ସେଇ ପୁରୁଣା ଭିଟାମାଟି । ବିଶେଷ କିଛି ପରିବର୍ତ୍ତନ ନାହିଁ । ବୁଢାବାପେ ଘରେ ନ ଥାନ୍ତି, ଯାଇଥାନ୍ତି ବିଲକୁ । ଧାନ କଟାକଟି ସମୟ । ଗୋପାଳବାବୁ ଘର ସାମ୍ନାରେ ଝୁଲୁଥିବା ଟିପା ତାଲାଟାକୁ କୌଣସି ପ୍ରକାରେ ଖୋଲି ଭିତରକୁ ପଶିଲେ । ସେତେବେଳକୁ ଦି ତିନିଟା ସ୍କୁଲପଢୁଆ ଝିଅ ଆସି ଶ୍ରୀମତୀ ମାନୀ ସିଂଙ୍କ ସାଙ୍ଗରେ କଥାବାର୍ତ୍ତା, ହସଖୁସୀ ଆରମ୍ଭ କରି ଦେଇଥିଲେ । ନାରୀ ଜାତିର ଏଇଟା ଗୋଟେ ସ୍ୱଭାବ । ସତେ ଯିମିତି ବହୁଦିନରୁ ସେମାନେ ଜଣାଶୁଣା ।

ବେଳ ଆଖର ହେବାକୁ ଲାଗିଲା । ସୂର୍ଯ୍ୟ ବୁଡ଼ିଯିବାକୁ କେଇଟା ମୁହୂର୍ତ୍ତ ବାକି ଅଛି, ବୁଢାବାପେ ଆସି ଘରେ ପହଞ୍ଚି ଗଲେ । ସେତ ବିଶ୍ୱାସ କରିଥିଲେ ଗୋପାଳ ତାଙ୍କୁ ଭୁଲି ଯାଇଛି ବୋଲି । ଗୋପାଳ ଆପଣା ବାପାଙ୍କୁ ଦଣ୍ଡବତ କଲା । ମାନୀ ଦେବୀ ଓଳଗି ହେଲାରୁ ବୁଢା କଟମଟ କରି ଚାହିଁଲା । ଗୋପାଳବାବୁ ବାପାଙ୍କୁ ବୁଝାଇ ଦେଲେ ସଂକ୍ଷେପରେ । ପୋଷ୍ଟାଲ ସୁପରିଣ୍ଟେଣ୍ଡେଣ୍ଟ ନୟନ କିଶୋର ବର୍ମାଙ୍କ ଏକମାତ୍ର ଝିଅ । ବର୍ମା ସାହେବଙ୍କୁ ବି ବୁଢା ଅଳ୍ପ ଅଳ୍ପ ଜାଣେ । ନାଁ ଟା ଶୁଣିଚି, ଖୁବ୍ ପଇସା ବାଲା । ତାଙ୍କରି ଝିଅ, ପୁଣି ଏଠି ? ବୁଢା ବୁଝିପାରିଲା ନି । ହେଇଥିବ, ଗୋପାଳ ତ ଆଉ ଛୋଟ ଲୋକଙ୍କ ସାଙ୍ଗରେ ମିଶୁନି । ହାକିମ ଲୋକ ।

ହାକିମ କଥାଟା ମନେ ପଡୁପଡୁ ବୁଢାର କୋହ ଉଠିଲା । ହେଲେ ମନ ଭିତରେ ଚାପି ରଖିଥାଏ, କାଳେ ଗୋପାଳ ଜାଣିଯିବ ବୋଲି । ଗୋପାଳ ଜାଣୁଁ, ହେଲେ ବର୍ମା ସାହେବଙ୍କ ଝିଅ ? ଗାଁ ସାରା ସଞ୍ଜବତୀ ଲାଗି ସାରିଥାଏ । ସେତେବେଳକୁ ମାନୀଦେବୀ ଘରଝିଅ ପରି ଲଣ୍ଠନଟେ ଲଗେଇ କିଛି ଫଳ ଆଣି ବୁଢାବାପେଙ୍କ ପାଖରେ ଥୋଇଥାନ୍ତି । ବୁଢା ହରି ସିଂ ସେତେବେଳକୁ କାହିଁ କେତେଦିନ ତଳକୁ ଫେରି ଯାଇଥାଏ । ରାଗ ଆଉ ଅଭିମାନରେ ମନ କୁହୁଳି ଉଠୁଥାଏ । ଖାଲି ପୁଅ ପାଖରେ ବସିଥାନ୍ତି । ଏତେ ପାଖରେ ଥାଇ ବି ସେମାନେ ପ୍ରାୟତଃ କିଛି କଥାବାର୍ତ୍ତା ହୋଇ ନାହାନ୍ତି ଏ ଯାକେ, ଧାନ ଜମି କଥା ବା ପୁଅର ଚାକିରି ପ୍ରମୋଶନ କଥା ।

ବୁଢାର ମନେପଡ଼ିଗଲା, ସେଦିନ ଟିକେ କାଶ ହେଉଥିଲା ବେଳେ ଗୋପାଳର ସେଇ କେତେପଦ କଥା : ଦେଖ ତୁମେ ମୋର କିଛି ଉପକାର କରି ନାହିଁ । ଇଚ୍ଛା ହେଲେ ବସାରେ ରୁହ, ନୋହିଲେ ଚାଲିଯାଅ । ଆଉ ଦେଖ, ବାବୁମାନେ ଆମ ଦୁଆରକୁ ଆସିଲେ ତୁମେ ଘରୁ ବାହାରିବ ନାହିଁ ।" କଥାଟା ବାଧିଥିଲା ସେତେବେଳେ । କିନ୍ତୁ ପୁଅକୁ କିଛି ଭରସି କହିପାରି ନଥିଲା । ପାଟିରୁ ଅସ୍ପଷ୍ଟ ଭାବେ ଏବେ କଥାଟା ବାହାରି ପଡ଼ିଲା : ମୁଁ ତୋର କିଛି ଉପକାର କରିନି ?

କଥାଟାକୁ ଠକ୍ ବୁଝି ପାରିଥିଲେ ଗୋପାଳ ବାବୁ । ଆଉ ବେଶୀ ଡେରି ହେଲାନି । ସାଙ୍ଗେ ସାଙ୍ଗେ ନରମ ସ୍ୱରରେ କହିଲେ : ଆପଣ ମୋର କିଛି ଅପକାର କରି ନାହାନ୍ତି ବାପା ।"

ବୁଢା ମନକୁ ମନ କହିଲା : ହଁ, ହେଇ ପାରିଥାଏ । ସେତେବେଳେ ଗୋପାଳ ଉପକାର ଯାଗାରେ ଅପକାର କହିଥିବ, ଜରୁଆ ଲୋକ ତ, କାନକୁ ଭଲ ଶୁଣାଯାଇ ନଥିବ ।" ହେଲେ ମଫସଲକୁ ଗଲାବେଳେ ଜିନିଷପତ୍ର ନେଇକରି ଯିବା କଥାଟା କହୁ କହୁ ବୁଢା କହି ପକେଇଲା ଏକ ନିଃଶ୍ୱାସରେ ।

ସେତେବେଳକୁ ମାନୀ ଦେବୀ କିଛି ଦୂରରୁ ଠିଆ ହୋଇ ସବୁ ଜାଣି ପାରିଥିଲେ । ଜାଣି ପାରିଥିଲେ ବାପ ପୁଅଙ୍କ ଭିତରେ କିଛି ଗୋଟେ ଦ୍ୱନ୍ଦ୍ୱ ଉପୁଜିଛି । ବଡ଼ଘର ଝିଅ । ସବୁ ବିଦ୍ୟାରେ ପାରଙ୍ଗମା । ସାଙ୍ଗେସାଙ୍ଗେ ପାଖକୁ ଆସି ଭାଷଣ ଦେବା ଆରମ୍ଭ କରିଥିଲେ । ଏଇ ଭାଷଣର ସାରାଂଶ ହେଲା : ନିଜ କାମ ନିଜେ କର । ଏ ଯୁଗରେ ମୂଲିଆମାନଙ୍କୁ ବିଶ୍ୱାସ କରିବା ଉଚିତ ନୁହେଁ । କାରଣ ବେଳ ପଡ଼ିଲେ ସେମାନେ ତୁଟି କାଟିନେବା ଅସମ୍ଭବ ନୁହେଁ । ଏପରିକି ଏଠାକୁ ଆସିବା ସମୟରେ ସେମାନେ ଏତେ ଜିନିଷ ସବୁ ନିଜ ହାତରେ ବୋହିକରି ଆଣିଲେ । ଗୋଟିଏ ହେଲେ ମୂଲିଆ ଲଗେଇ ନାହାନ୍ତି ।"

ଝିଅଟିର ଯୁକ୍ତିରେ ସେତେବେଳକୁ ହରି ସିଂ କିଛିଟା ମଜା ପାଇଥିଲା ସତ, ହେଲେ ଶାନ୍ତି ପାଇପାରୁ ନଥିଲା । ଦିନେ ତ ପୁଣି ଗୋପ ଇଂରାଜୀ ଘୁଷି ମାରିଥିଲା - କିଆବାଡ଼ରେ ଫୋପାଡ଼ି ଦେବାକୁ କହିଥିଲା - ଆଉ ବୁଢା କିଛି କହି ପାରିଲାନି । ଶ୍ୱାସରୁଦ୍ଧ ହୋଇ ଆସିଲା । କେତେବେଳ ଯାଏ ସେଇ ଗାତୁଆ ଆଖିରୁ ପାଣି ବାହାରିଲା ।

କିଛି ସମୟ ପରେ ବୁଢା ଦେଖିଲା ଗୋପାଳ ଆଖିରେ ଲୁହ । ଲୁହ ବି ବର୍ମା ସାହେବଙ୍କ ଝିଅ ଆଖିରେ । ବୁଢା ଥୟ ଧରି ପାରିଲାନି ।

# ଗୋଟିଏ କୁକୁରର କାହାଣୀ

ଉତ୍ତରାଧିକାରୀ ସୂତ୍ରରେ ଭୂପାଳକ ସେଇ ସୁବର୍ଣ୍ଣ ବସୁଧା ଖଣ୍ଡକର ଥିଲେ ନରବିଷ୍ଣୁ । ରୂପ, କାନ୍ତି, ଯଶ ଓ କ୍ଷମତାର ଜଳାର୍ଣ୍ଣବ ଭିତରେ ସତତ ଉବୁଟୁବୁ ହେଉଥିବା ଏହି ରାଜାଙ୍କର ପ୍ରଜାନୁବତ୍ସଳତା ସଂପର୍କରେ କିଛି ନ କହିବା ବରଂ ଭଲ । ତା ନ ହେଲେ କେଉଁ ଗରଜରେ ତାଙ୍କ ପ୍ରଶାସନରେ ଥିବା ଏଇ ମର୍ତ୍ତ୍ୟ ମଣ୍ଡଳର ପ୍ରଜାମାନେ ଏପରି ଏକ ଉପହାର ଦେବାକୁ ଚାହିଁଥାନ୍ତେ ? ଅବଶ୍ୟ, ଭୂପାଳକ ଏହି ଦୁର୍ଲଭ ଉପହାରଟି ନିଜେ ସିଧାସଳଖ କାହାରିଠୁ ଗ୍ରହଣ କରି ନଥିଲେ । ବହୁ ବର୍ଷ ତଳେ ତାଙ୍କର ଗୋସେଇଁ ବାପାଙ୍କୁ ଦିଆଯାଇଥିବା ଏହି ଉପହାରଟି ବଂଶାନୁକ୍ରମେ ଭୂପାଳକଙ୍କ ଅକ୍ତିଆରକୁ ଆପେ ଆପେ ଆସିଯାଇଥିଲା । ଉପହାର ସ୍ୱରୂପ ପ୍ରଜାମାନେ ଭୂପାଳକଙ୍କ ପୂର୍ବ ପୁରୁଷଙ୍କୁ ଏଇ ବିଚିତ୍ର ଶ୍ୱାନଟିକୁ ଦେଇଥିଲେ ଏବଂ ଅନୁରୋଧ କରିଥିଲେ :-

ଏଇ ଶ୍ୱାନଟି ହେଉଚି ଆମ ପ୍ରଜାକୂଳର ଆଶା ଓ ଭରସା । ଆପଣଙ୍କ ପ୍ରତି ଥିବା ଶ୍ରଦ୍ଧା ଓ ସମ୍ମାନର ପ୍ରତୀକ ଭାବେ - ଆମେ ଏହାରୁ ଛାଡ଼ିଦେଲୁ, ଆପଣଙ୍କ ହେପାଜତରେ ! ଏ ସ୍ନେହ ଅକ୍ଷୟ । ତେଣୁ ଏ ଶ୍ୱାନ - ଅମର ।

ସିଂହାସନ ଆରୋହଣ କରିବାର କିଛି ମୁହୂର୍ତ୍ତ ପରେ ତତ୍‌କାଳୀନ ପ୍ରଜାବତ୍ସଳ ମହାରାଜା ଶ୍ୱାନଟିର ମଧ୍ୟ ନାମକରଣ (?) କରିଥିଲେ : ଗଣତନ୍ତ୍ର ।" ସେଇଦିନଠୁ ଶ୍ୱାନଟି କେବଳ ରାଜପରିବାରରେ ନୁହେଁ, ପ୍ରଜାମାନଙ୍କ ନିକଟରେ ମଧ୍ୟ ପରିଚିତ ।

ରାଜ ପରିବାରରେ ଥିବା ହେତୁ ଶ୍ୱାନଟି ଅତି ଅଲିଅଳରେ ବଢ଼ିବାକୁ ଲାଗିଲା । ସହଜେ ତ ସେ କୁକୁର - ଅକ୍ରାମର । ତା ବିଷୟରେ ଅଜ୍ଞ ଓ ଅନଭିଜ୍ଞ ରାଜା ଭୂପାଳକ

ତେଣୁ ତାର ସଠିକ୍ ଅବସ୍ଥା ଓ ଆୟୁଷ ବା ଜାଣନ୍ତେ କିପରି ? ଦୁଇ ପୁରୁଷତ ଭଲରେ କଟି ଯାଇଥିଲା !

ଦୈବଚକ୍ରେ, ଭୂପାଳକଙ୍କ ରାଜତ୍ୱକାଳରେ ପ୍ରଜାମାନଙ୍କ ଆଡୁ ଏକ ବିଷମ ପ୍ରଶ୍ନ ଉଠିଲା ଏବଂ ସେଇ ସ୍ୱତନ୍ତ୍ର କୌତୁକପୂର୍ଣ୍ଣ ପ୍ରଶ୍ନଟି ଏଇଭଳି ଥିଲା : ଆମେ ଦେଇଥିବା ଶ୍ୱାନଟିର ସ୍ୱାସ୍ଥ୍ୟ କିପରି ଅଛି ?"

ଏହା କଣ କେବେ ଏକ ପ୍ରଶ୍ନ ହୋଇପାରେ, ପୁଣି ରାଜାଧୀରାଜ ମହାମାନ୍ୟ ଭୂପାଳକଙ୍କୁ ?

ଅବଶ୍ୟ ଏଇ ପ୍ରଶ୍ନଥିଲା ମୁଷ୍ଟିମେୟ, ନ୍ୟସ୍ତସ୍ୱାର୍ଥ, ଅସହିଷ୍ଣୁ ତଥା ଅସନ୍ତୁଷ୍ଟ ଗୋଷ୍ଠୀର, ଯେଉଁମାନେ ଭୂପାଳକଙ୍କ ସାଧୁତା ସଂପର୍କରେ ଅନେକ ଦିନରୁ ଆଶଙ୍କା ପ୍ରକାଶ କରିଆସୁଥିଲେ । ତେବେ ଏଇ ସାମୟିକ ଫାଇଦା ଉଠାଉଥିବା କିଛି ଦଲାଲ୍‌ଙ୍କୁ ଖରିଦ୍ କରି ନେବାର କୌଶଳ ଓ ସାମର୍ଥ୍ୟ ଭୂପାଳକଙ୍କ ପାଖରେ ବେଶ୍ ମହଜୁଦ୍ ଥିଲା । ମାତ୍ର ସେ ତାହା କଲେ ନାହିଁ । ବରଂ ନିଜର ପରିଷଦବର୍ଗଙ୍କ ପରାମର୍ଶ କ୍ରମେ ସେ ତାଙ୍କ ଦେଶର ସମସ୍ତ ସମ୍ବାଦ ପରିବେଷଣକାରୀଙ୍କୁ ଆକଣ୍ଠ ପାନୀୟରେ ଆପ୍ୟାୟିତ କରିଥିଲେ । ସେଇଦିନଠୁ କୁକୁରଟିର ସ୍ୱାସ୍ଥ୍ୟର ପୁଷ୍କଳତା ସଂପର୍କରେ ବହୁ ପତ୍ରପତ୍ରିକାରେ ଆଲୋଚନା ସହ, ଭୂପାଳକଙ୍କ ଫଟୋ ମଧ୍ୟ ଛପିଛି । ବୁଦ୍ଧିଜୀବୀମାନଙ୍କର ଏକ ରାଜ୍ୟସ୍ତରୀୟ ସାମ୍ମୁଖ୍ୟ ଗଠନ କରାଯାଇ ନିଜେ ଭୂପାଳକ ମହାଜ୍ଞାନୀ ଭାବେ ନିଜକୁ ପରିଚିତ କରାଇବା ସଙ୍ଗେସଙ୍ଗେ ତଥାକଥିତ ବିଦ୍ୱାନମାନଙ୍କୁ ବଟଷ୍କର କରି ବାହାବା ଆଦାୟ କରିଛନ୍ତି । ମିଥ୍ୟାକୁ ସମାଜରେ ମାନ୍ୟତା ପ୍ରଦାନ କରାଯାଇଛି ଓ ସତ୍ୟ ହୋଇଛି କ୍ରୀତଦାସ ।

ସତତ ଉପେକ୍ଷିତ ଆଚାର ଓ ବିଚାରରେ ଦେଖାଦେଇଛି ଅଭୂତପୂର୍ବ ଆଲୋଡ଼ନ । ନାରୀ ଧର୍ଷଣ, ହତ୍ୟା, ଲୁଣ୍ଠନ ହୋଇଛି ସାମାଜିକ ଚଳଣିର ଏକ ବିଶିଷ୍ଟ ଅଙ୍ଗ । ତଥାପି ରାଜାଙ୍କର ବିନା ନିର୍ଦ୍ଦେଶରେ ରାଜ୍ୟରେ ଚନ୍ଦ୍ର ସୂର୍ଯ୍ୟ ମଧ୍ୟ ଆତଯାତ ହେବାକୁ ସଙ୍କୋଚ ପ୍ରକାଶ କରୁଥାନ୍ତି । ସମୟ ଗଡ଼ି ଯାଉଥାଏ ।

ସମସ୍ତ ସୁଖ, ଶାନ୍ତି ଓ ପ୍ରାଚୁର୍ଯ୍ୟର ବିଜ୍ଞାପନ ସତ୍ତ୍ୱେ ଗୋଟିଏ ସମ୍ବାଦ ଲୁଚି ରହି ପାରିଲାନି ସବୁକାଳ ଲାଗି । ସମ୍ବାଦର ଶୀର୍ଷକଟି ଥିଲା ଏହିପରି : ରାଜାଙ୍କ ହେପାଜତ୍‌ରେ ଥିବା ମହାମାନ୍ୟ ଶ୍ୱାନଟି ଏବେ ପାଗଳ ହୋଇଯାଇଛି । ମୁଷ୍ଟିମେୟ, ବୁଦ୍ଧିଜୀବୀ, ସାମ୍ବାଦିକ ଓ ଅନ୍ୟାନ୍ୟ ପ୍ରବକ୍ତାମାନଙ୍କର ଏତାଦୃଶ ବିବୃତି ଖଣ୍ଡନ କରିବାକୁ ଯାଇ ଏକ ସାମ୍ବାଦିକ ସମ୍ମିଳନୀରେ ଭୂପାଳକ ଶ୍ୱାନଟିର ନିଟୋଳ ସ୍ୱାସ୍ଥ୍ୟ ସଂପର୍କରେ ଆଲୋଚନା କରିବାକୁ

ଲାଗିଲେ । ବିଶେଷଜ୍ଞମାନଙ୍କର ରିପୋର୍ଟ ଛପାଯାଇ ସଭାରେ ବଣ୍ଟନ କରାଗଲା । ଅନ୍ୟାନ୍ୟ ମନ୍ତ୍ରୀ ପରିଷଦ ମଧ୍ୟ ରାଜାଙ୍କ ବିବୃତିକୁ ଅବଲମ୍ବନ କରି ଶ୍ୱାନର ହୃଷ୍ଟପୁଷ୍ଟତା ସଂପର୍କୀୟ ଇସ୍ତାହାରମାନ ପ୍ରକାଶ କଲେ । ସକାଳ ଓ ସଂଧ୍ୟାର ତାପମାତ୍ରା, ନାଡ଼ିର ଗତି, ରକ୍ତ ଚାପ ସଂବନ୍ଧରେ ବୁଲେଟିନ୍ ପ୍ରକାଶ ପାଇଲା । ବିଭିନ୍ନ ସମ୍ବାଦପତ୍ରରେ ସ୍ୱତନ୍ତ୍ର ପ୍ରତିନିଧି ପଠାଉଥିବା ରିପୋର୍ଟ ସହ ଶ୍ୱାନଟିର ଫଟୋ ଛାପିବାରେ ପ୍ରତିଦ୍ୱନ୍ଦିତା ଲାଗିଲା । ସାମ୍ମୁଖ୍ୟର କିଛି ସଭ୍ୟ ଏହାକୁ ଆଧାର କରି ଫିଚର ପୋଏମ୍ ବି ଲେଖିଲେ ।

ସବୁ ବିଜ୍ଞାପନ ସତ୍ୱେ-ରାଜା ଭୂପାଳକ ଜାଣିଥିଲେ ଶ୍ୱାନଟିର ସ୍ୱାସ୍ଥ୍ୟ-ତଥା ମାନସିକ ଦୁରାବସ୍ଥା ବିଷୟରେ । ଏପରି ହେବାର କାରଣ ପହିଲେ ନ ଖୋଜି, ରାଜ୍ୟର ବଛା ବଛା ବୈଦ୍ୟଙ୍କୁ ନେଇ ଏକ କମିଟି ଗଢିଲେ ଭୂପାଳକ, ଯହିଁରେ ରାଜବୈଦ୍ୟ ହେଲେ ଚେୟାରମ୍ୟାନ୍ । ଏହାରି ମଝିରେ ମିଳୁଥିଲା ପଢିବାକୁ, ଶ୍ୱାନଟିର କରିତ୍‌କର୍ମ ସଂପର୍କୀୟ ଚମତ୍କାର କାହାଣୀମାନ । ଚାରିଆଡ଼େ ଏକ ଆଶଙ୍କା, ନୀରବ ଗୁଞ୍ଜରଣ ଓ ଅହେତୁକ ଅବିଶ୍ୱାସ ତଥାପି ଚାପି ହୋଇ ରହିଥିଲା । ସମସ୍ତ ତତ୍ତ୍ୱାବଧାନ ସତ୍ୱେ କୁକୁରଟିର ସ୍ୱାସ୍ଥ୍ୟରେ ଦୃଢ ଅବନତି ଘଟୁଥିଲା ଏବଂ ସମସ୍ତଙ୍କ ବିଚାର ବୁଦ୍ଧିକୁ ଉପହାସ କରି ସେ ପାଗଳ ହୋଇଗଲା । ତାକୁ ଏଣିକି ଶିକୁଳିରେ ବାନ୍ଧି ରଖିବା ସମ୍ଭବପର ହେଲା ନାହିଁ । କାହାରି ନିର୍ଦ୍ଦେଶକୁ ମଧ୍ୟ ଭ୍ରୂକ୍ଷେପ ସେ କଲା ନାହିଁ । ଦେବତୁଲ୍ୟ କୁକୁରଟି ହୁଏତ ହଠାତ୍ ଭୁଲିଯାଇଥିଲା ଯେ - ତିନି ପୁରୁଷରୁ ସେ ରାଜ ପରିବାରର କେବଳ ମାନନୀୟ ସଭ୍ୟ ନୁହେଁ, ସେହିଁ ତାଙ୍କ ଲୋକପ୍ରିୟତା ତଥା ଉତ୍‌ଥାନ ଓ ପତନର ଭିତ୍ତିଭୂମି । ଦରବାର ବସିବାବେଳେ ଅନେକ ସମୟରେ ବିରୋଧି ତଥା ନିନ୍ଦୁକ ଗୋଷ୍ଠୀ ଏ କୁକୁରଟିର ଯତ୍ନ ସଂପର୍କରେ ନାନାଦି ପ୍ରଶ୍ନ କରୁଥିଲେ । ଭୂପାଳକ ସମସ୍ତ ପ୍ରଶ୍ନକୁ ଅମୂଳକ, ଭିତ୍ତିହୀନ ଓ ଡାହାମିଛ ବୋଲି ଯେତେ ରୂପ ଦେଲେ ବି, ନିଜକୁ ବୁଝାଇବାରେ ଅସମର୍ଥ ହେଉଥିଲେ ।

ଏଣେ କୁକୁରଟି ଦିନେ କାମୁଡ଼ିବାକୁ ଆରମ୍ଭ କଲା । ପାଗଳା କୁକୁର ଡରରେ କେବଳ ନିରୀହ ରାଜନବରର ସେବକଗଣ ନୁହନ୍ତି, ମହାପ୍ରତାପୀ ରାଜା, ଦରବାରର ବିଜ୍ଞ ସୁଜନ ଓ ମହାଜନଗଣ, ସାମ୍ବାଦିକ, ନ୍ୟାୟଦାତା, ଆରକ୍ଷୀ ଓ ସେନାଧ୍ୟକ୍ଷଗଣ ବି ସଂତ୍ରସ୍ତ ହୋଇଗଲେ । କୁକୁରଟି ଯେ ଚିହ୍ନା-ଅଚିହ୍ନା ସମସ୍ତଙ୍କୁ ଦନ୍ତାଘାତ କରିଚାଲିଛି - ତହିଁରୁ ରକ୍ଷା ପାଇବାର ଉପାୟ କଣ ? ଏଇ ଅବସ୍ଥାରେ କିଛି କାଳ କଟିଗଲା । ହଠାତ୍ ଦିନେ ମନ୍ତ୍ରୀ ପରିଷଦର ଏକ ଜରୁରୀ ବୈଠକ ବସିଥିବା ବେଳେ କୁକୁରଟି ସେଇ ନିଷିଦ୍ଧ କୋଠରୀ ଭିତରକୁ ପଶିଗଲା । ମନ୍ତ୍ରୀଙ୍କଠାରୁ କଟୁଆଳ ପର୍ଯ୍ୟନ୍ତ ଭୟରେ ସମସ୍ତେ ନିଜ ନିଜର ଜୀବନରକ୍ଷା ନିମିତ୍ତ ଧାଇଁବାକୁ ଆରମ୍ଭ କଲେ । କିନ୍ତୁ ଆଶ୍ଚର୍ଯ୍ୟର କଥା ସେଦିନ

କାହାକୁ ବି ସେ ଆଘାତ କଲା ନାହିଁ । କୁକୁରଟି ପକ୍ଷରେ କିଛି କହିବା ସମ୍ଭବ ହେଉ ନଥିଲେ ବି, କଥା ବୁଝିବାରେ ହୁଏତ ତାର କିଛି ଅସୁବିଧା ହେଉନଥିଲା । ସବୁ ଦେଖିସାରି, ସେଦିନ କୁକୁରଟି ମନେ ମନେ ଅନେକ ସମୟ ଯାଏ ହସିଥିଲା ।

ଏହାର ଅଳ୍ପଦିନ ପରେ - ସକାଳୁ ଗଣମାଧ୍ୟମମାନଙ୍କରୁ ଖବର ପାଇ ସମଗ୍ର ରାଜ୍ୟବାସୀ ସହରର ଉପାନ୍ତରେ ଥିବା ସେଇ ସଂକୀର୍ଣ୍ଣ ନର୍ଦ୍ଦମା ପାଖରେ ପହଞ୍ଚିଲେ । ଆଗରୁ ପହଞ୍ଚି ସାରିଥିଲେ ରାଜନ୍ୟବର୍ଗ । ସମ୍ବାଦଟି ଥିଲା - ମର୍ମନ୍ତୁଦ ତଥା ଶୋକ ଜର୍ଜରିତ । ଗତ ରାତିରେ କୌଣସି ଏକ କାରଣରୁ ଶ୍ୱାନଟିର ମୃତ୍ୟୁ ହୋଇଛି - ଏଇ ନର୍ଦ୍ଦମା ପାଖରେ । ପେଟ ଫୁଲି ଯାଇଛି ଏବଂ ଜିଭଟା ବିକୃତ ଭାବେ ବାହାରି ଆସିଛି ପଦାକୁ । ହତ୍ୟା ନା ଆତ୍ମହତ୍ୟା ବୁଝାପଡୁନଥିଲା । ଶ୍ୱାନର ମୃତ୍ୟୁପରେ ରାଜ୍ୟବ୍ୟାପି ଶୋକ ସଭାମାନ ଅନୁଷ୍ଠିତ ହେବାକୁ ଲାଗିଲା । ଗୁଣକୀର୍ତ୍ତନ ସହ ବିଭିନ୍ନ ରାଜପଥ, ବିଶ୍ୱବିଦ୍ୟାଳୟ ତଥା ମହାନ୍ ଅନୁଷ୍ଠାନମାନଙ୍କର ନାମକରଣ କରାଗଲା । ରାଜା ଓ ରାଜକର୍ମଚାରୀବର୍ଗ ଚିନ୍ତିତ ଥିଲେ; କାରଣ ଲୋକଶକ୍ତି ବିରୁଦ୍ଧରେ ଶ୍ୱାନଟି ହିଁ ଥିଲା ରାଜଶକ୍ତିର ରକ୍ଷା କବଚ । ସବୁ ସତ୍ତ୍ୱେ, ଶେଷ ପ୍ରଶ୍ନଟି ତଥାପି ଅସମାହିତ ଥିଲା : ଶ୍ୱାନଟିର ମୃତ୍ୟୁପାଇଁ ଦାୟୀ କିଏ ?"

# ଘୋଟଲ

ଘରକୁ ଫେରିଲା ବେଳକୁ ରାତି ଏଗାର । ଆଜିକାଲି ଏମିତି ଡ଼େରି ହେଉଛି ।

ଦରଜାରେ ଆଘାତ୍ ଦେବା ଆବଶ୍ୟକ ପଡ଼ିଲାନି, ଟିପର ମୃଦୁ ଚାପରେ ବି ଖୋଲିଗଲା । ଖୋଲିଯିବା ଉଚିତ୍ ମଧ୍ୟ ଥିଲା । ସବୁଦିନ ଭଳି ସେ କେଁ କଟରର ଆର୍ତ୍ତନାଦ କରିବାକୁ ପସନ୍ଦ କଲାନି । ନୀରବରେ ସବୁ ଅତ୍ୟାଚାରକୁ ସହ୍ୟ କରି ନେବାର ଅଭ୍ୟାସ କରିସାରିଛି । ବିପ୍ଲବ ରୂପାନ୍ତରିତ ହେଇଯାଇଛି ସ୍ୱାଗତର ଅହେତୁକ ପୁଲକରେ । ଦରଜା ଖୋଲିଯିବା ପରେ ହିଁ ଘରର ପ୍ରଥମ ଦୃଶ୍ୟ : ଡ୍ରଇଁରୁମ୍ । ଅନେକ ବର୍ଷ ଧରି ଚୂନ ଲାଗି ନଥିବା କାନ୍ଥରେ ତୈଳଚିତ୍ର ସବୁ ବେଶ୍ ନିର୍ଲିପ୍ତ ଓ ସମ୍ଭ୍ରାନ୍ତ । ଘରେ ପଡ଼ିଥିବା ସୋଫାର ଠିକ୍ ସାମ୍ନା କାନ୍ଥରେ ଗୋଟେ ଝରକା । ସାଢେ ତିନିଫୁଟ ଲମ୍ବା ଓ ସାଢେ ଦୁଇଫୁଟ ଚଉଡ଼ାର ଏଇ ଆୟତନ ଭିତରେ କିଛି ଲୁହା ରେଲିଂ କେଉଁ କାଳରୁ ଅବହେଳିତ ହେଇ ଚାହିଁଛନ୍ତି । ଅନେକ ଦିନରୁ ସେଠି ଝୁଲୁଛି ପରଦାଟେ ବାଦୁଡ଼ି ଭଳି । ଝରକା ପାଖକୁ ଲାଗି କାନ୍ଥ ଆଲମିରା, ସେଠି କେବଳ ପୁରୁଣା ପତ୍ରିକା । ଗୋଟେ ପାଉଡ଼ର ଡ଼ବା ଓ ମହିଳାମାନଙ୍କ ଦ୍ୱାରା ବ୍ୟବହୃତ ଶିଙ୍ଗ ପାନିଆଟେ ପଡ଼ିରହିଛି । କାନ୍ଥରେ ଝୁଲୁଛି କ୍ରମଶଃ ଆୟୁଷ କ୍ଷୟ ହେଇ ଆସୁଥିବା ଗୋଟେ କ୍ୟାଲେଣ୍ଡର, ତଳେ କୌଣସି ଔଷଧ କମ୍ପାନୀର ବିଜ୍ଞାପନ ।

ସବୁଦିନ ଠିକ୍ ଏହି ଅନୁଭବକୁ ଦୋହରାଇ ନିଏ ରମେଶ, ତଥାପି ତାକୁ ଲାଗେ ଆଉ କିଛି ରହିଗଲା । ସେଇଟାକୁ ସେ କେବଳ ଅପେକ୍ଷା କରେ, କଣ ସେଇଟା ?

ଆଜିର ଅନୁଭବ ଟିକେ ନିଆରା । ସବୁଦିନଠୁ । ଯଦିଓ ପ୍ରତିଦିନ ଭଳି ଆଜି ବି ସେ ଘରକୁ ଫେରିଲା ବେଳେ ଜେଲ ଘଣ୍ଟାରେ ଏଗାରଟା ଢଂଢଂ ଶବ୍ଦ ସେ ଗଣି ପକାଇଛି । ତାର ହିସାବ ନିର୍ଭୁଲ୍ । ଫେରିବା ପୂର୍ବରୁ ସେ ସହରର ଉପକଣ୍ଠରେ ଥିବା ଏକମାତ୍ର ବିଦେଶୀ ମଦ ଦୋକାନରୁ କିଛି ନିଶା କିଣି ଆଣିଛି । ଆଜିକାଲି ଏଇଟା ନହେଲେ ନ ଚଳେ । ଏମିତି ଅବସ୍ଥାରେ ଏବେ ରମେଶ । ଆଜି ଟିକେ ବେଶୀ ପିଇ ଦେଇଛି ସେ । ଖାସ୍ ମୁଡ୍ ଥିଲା । ସେଇଥି ପାଇଁ ତ ଜୁଲି ପାଇଁ ନୂଆ ବେବି ସୁଟ୍ ଆଉ ଲୀନା ପାଇଁ କାଞ୍ଜିଭରମ୍ ଶାଢୀଟେ ଅଫିସରୁ ବେହେରା ହାତରେ ପଠାଇ ଦେଇଥିଲା ଚାରିଟା ପୂର୍ବରୁ ।

ଭଲ ପାଇବାକୁ ହେଲେ ଏମିତି କିଛି କିଛି ଦବାକୁ ହୁଏ । ଆଜି ଜୁଲିର ଜନ୍ମ ଦିନ । ସନ୍ଧ୍ୟା ପୂର୍ବରୁ ଘରକୁ ଫେରିବ ବୋଲି ମନସ୍ଥ କରିଥିଲା ସେ । ମାତ୍ର ଅଫିସ୍‌ରୁ ଫେରିବା ବାଟରେ ତାର ମନେହେଲା, ଏବେ ମୁଡ୍ ନାହିଁ । ବରଂ କିଛି ସମୟ ବୁଲାଯାଉ, ବାଦାମ୍ ଖିଆ ଯାଉ ଅଥବା ଅନ୍ୟ କିଛି...।

ଆଜି ଜୁଲିର ତୃତୀୟ ବାର୍ଷିକ ଜନ୍ମୋତ୍ସବ, ଶୀଘ୍ର ଫେରିବ ବୋଲି ଲୀନାକୁ କହିଥିଲା ଅଫିସ୍‌କୁ ଯିବା ସମୟରେ । ମାତ୍ର ଲୀନାର ଜିଦ୍ ଥିଲା ସେ ଛୁଟି ଆପ୍ଲାଇ କରୁ । ତାର ବରାଦ ଭିତରେ ଥିଲା ସେମାନେ ଜୁଲିକୁ ନେଇ ମନ୍ଦିର ଯିବେ । ନିକଟସ୍ଥ ଚଣ୍ଡୀ ମନ୍ଦିରକୁ । ଜୁଲିର ସର୍ବ ସଫଳତା ପାଇଁ ଦେବୀଙ୍କ ପାଖରେ ଅର୍ଜି ପେଶ୍ କରିବେ, ଧୂପ, ଦୀପ ଓ ପୂଜାରୀକୁ କିଛି ହାତଗୁଞ୍ଜା ଦେଇ । ଲୀନାର ଏତାଦୃଶ ଆଡ଼ମ୍ବରରେ ସେ ହସିଥିଲା ଓ ହସୁ ହସୁ କଥା ଦେଇଥିଲା, ଲଞ୍ଚ ଛୁଟୀ ପରେ ପରେ ସେ ତାର ଉପରିସ୍ଥ ହାକିମଙ୍କୁ କହି, ଘରକୁ ଚାଲି ଆସିବ । ସେଇଠୁ ସେମାନେ ସନ୍ଧ୍ୟାବେଳେ ସହରର ଉପାନ୍ତରେ ଥିବା ଅବହେଳିତ ନଈପଠାକୁ ଭେଟିବେ । ଜହ୍ନ ସହ କଥା ବାର୍ତ୍ତା ହେବେ । ଅଥବା ଫିଲ୍ମଟେ ଯିବେ । ଅନେକ ଦିନ ହେଲା ସେମାନେ କୌଣସିଟି ସନ୍ଧ୍ୟାକୁ ଏକାଠି ଉପଭୋଗ କରିପାରି ନାହାନ୍ତି । ଜୁଲିର ଜନ୍ମୋତ୍ସବ ସେମାନଙ୍କର ଏଇ ଅପ୍ରତ୍ୟାଶିତ ପ୍ରମୋଦ ପାଇଁ ନୂତନ ଖସଡ଼ା ପ୍ରସ୍ତୁତ କରିବାରେ ସହାୟକ ହବ । ଏମିତି ଅନେକ ଅନେକ ଭରସାରେ ପୋତି ପକାଇ ଥିଲା ରମେଶ । ଲୀନା ତାର ପ୍ରତିଶ୍ରୁତିକୁ ସମର୍ଥନ ଦେଉଛନ୍ତି ନା ନାହିଁ ଜାଣିବା ଆଗରୁ ସେ ଅଫିସ୍‌କୁ ବାହାରିଗଲା । ମାତ୍ର ଏବେ ?

ରାତି ଏଗାର ।

ସୋଫା ଉପରେ ନିଜର ଟଳମଳ ଗଣ୍ଡିଟାକୁ ଥୋଇବାକୁ ଯିବାବେଳେ ରମେଶର ଆଖି ହଠାତ୍ ଟି ପୟ ଉପରେ ସ୍ଥିର ହୋଇଗଲା । ପୂର୍ବାପେକ୍ଷା ସେ ଅନୁଭବ କଲା

ଆଖିର ଉଜ୍ଜ୍ୱଳତା ହରାଇ ବସୁଛି । ପାଟିରୁ ତାର ନିଃଶବ୍ଦରେ ଉଚ୍ଚାରିତ ହେଇଗଲା : ୟୁ ବାଷ୍ଟାର୍ଡ୍ ।" ଏଭଳି ଏକ ସମ୍ବୋଧନକୁ ସେ ଫୋପାଡ଼ି ଦେଲା ଏ ବିଶ୍ୱରେ ତାର ଏକମାତ୍ର ଶତ୍ରୁ ଜୟନ୍ତ ପ୍ରତି । କିଛି ସମୟ ଯାଏ ସେ ନିରୀକ୍ଷଣ କଲା ଟି ପୟ ଉପରେ ଚୁପ୍ ଚାପ୍ ବସି ତାକୁ ଖତେଇ ହେଉଥିବା ଫୁଲ ତୋଡ଼ାଟାକୁ । ସେ ନିଶ୍ଚିତ ଥିଲା ସେଇଟା କେବଳ ଜୟନ୍ତର ହେଇପାରେ । ଆଉ କିଏ ବା ତାର ଶତ୍ରୁ ଅଛି ଏ ପୃଥିବୀରେ, ଯିଏ ତାକୁ ଫୁଲ ତୋଡ଼ାର ଉପହାସ ଦବ ? କିଛି ଘଟଣା ନ ଥାଇ ଦାନ୍ତ ଦେଖାଇ ହସିବ, ଯେଉଁ ହସରେ ଟିକେ ହେଲେ ବି ଆନ୍ତରିକତା ନ ଥିବ ? ସେ ଜୟନ୍ତ ମିଶ୍ର । ଜୁଲି ଜନ୍ମୋତ୍ସବ ଆଳରେ ଫୁଲତୋଡ଼ା ପଠାଇଛି ।

ରମେଶର ମନେହେଲା ଏଇନେ ଯିମିତି ସେ ରାଗରେ ଫାଟିଯିବ । ତାର ନିଃଶ୍ୱାସ ରୁଦ୍ଧ ହେଇ ଯାଉଥିଲା ଓ ନିଜକୁ ଆୟତ୍ତାଧୀନ କରିବାର ପ୍ରଚେଷ୍ଟା ଅବ୍ୟାହତ ରହିଥିଲା । ରମେଶର ମନେହେଲା, ଯୋଉଦିନଠୁ ଜୟନ୍ତ ମିଶ୍ର ଜନ୍ମ ନେଇଚି ତା ଭିତରେ, ଠିକ୍ ସେଇ ମୂହୁର୍ତ୍ତରୁ ଉଡ଼ିଯାଇଛନ୍ତି ଶାନ୍ତିର କପୋତମାନେ । ଆଉ ଫେରି ନାହାନ୍ତି କେବେ । ଫଳତଃ ସେମାନଙ୍କର ଅପେକ୍ଷାକୁ ସହି ନପାରି ସେ ପ୍ରତିଦିନ ଫେରିଯାଇଛି ସହର ଉପାନ୍ତରେ ଥିବା ଏକମାତ୍ର ବିଦେଶୀ ମଦ ଦୋକାନକୁ । ସେଠୁ ଫେରିଆସି ଅନେକ ସମୟ ଯାଏ ବିନା କାରଣରେ କଳି କରିଛି ଲୀନା ସହ ଏବଂ ଲୀନା ତାର ଏତାଦୃଶ ବ୍ୟବହାରରେ କାନ୍ଦୁ, ଏକଥା ବି ଚାହିଁଛି ।

ସେଇ ଜୟନ୍ତ ମିଶ୍ର - ତାର ପ୍ରଥମ ଓ ଶେଷ ଶତ୍ରୁର ଫୁଲତୋଡ଼ା ତାକୁ ଉପହାସ ନ କରି କଣ ଆଦର କରିଥାନ୍ତା ? କଥା କଥାକେ ଲୀନା ବି ଆଜିକାଲି କହୁଛି, ଜୟନ୍ତ ଭାଇ ଅମୁକଟା କହୁଥିଲେ, ଜୟନ୍ତ ଭାଇ ସମୁକ ଯାଗାକୁ ଯାଉଛନ୍ତି - ତମର କିଛି ଦରକାର ଅଛିକି ? ଜୟନ୍ତ ଭାଇଙ୍କ ସୁଟ୍ ଭାରି ଭଲ ଦେଖାଯାଉଛି ।

ଜୟନ୍ତ ... ... ଜୟନ୍ତ ... ... ଜୟନ୍ତ ... ଓଃ ... ୟୁ ବାଷ୍ଟାର୍ଡ୍ ।

ଲୀନାର ଏମିତି ଉଚ୍ଚାରଣରେ ସେ ଅତିଷ୍ଠ ହୋଇ ପଡ଼େ । ଏବେ ଉଚ୍ଚାରଣ ନୁହେଁ ସେ ଆଚରଣରେ କିଛି କିଛି ପରିବର୍ତ୍ତନ ଦେଖୁଛି । ଫୁଲତୋଡ଼ାଟା କେବଳ ନମୁନା ।

ରମେଶ ଏଥରକ ଭାବିବାକୁ ଲାଗିଲା, ଜୟନ୍ତ ଭଲ ଖେଳେ ବୋଲି ସେ ଶୁଣିଛି । କାହାଠୁ ଶୁଣିଛି ? ଲୀନା ଛଡ଼ା କିଏ ତାକୁ ଏ ପୃଥିବୀରେ ତାରିଫ୍ କରେ ? ଖେଳାଖେଳି କରୁଥିବାରୁ ତାର ସ୍ୱାସ୍ଥ୍ୟ ଭଲ ଅଛି ଓ ଉଚ୍ଚତା ଛଅଫୁଟ ପାଖା ପାଖି । ଲୀନାଠୁ ଛଅ ବର୍ଷ ଅଧିକା ତାର ବୟସ । ଏଇଠି ରମେଶର ଭୁଲ୍ ହେଇଗଲା ବୋଧେ । ପ୍ରଥମ ଭୁଲ୍, ନିଜ

ଚେହେରାଠୁ ଜୟନ୍ତର ସ୍ୱାସ୍ଥ୍ୟ ଭଲ ବୋଲି ଭାବିବା ଓ ଶେଷରେ ଲୀନା ସହ ଜୟନ୍ତର ଉଚ୍ଚତାକୁ ତୁଳନା କରିବା । ଜୟନ୍ତ ତାଠୁ କୋଉ ଗୁଣରେ ଅଧିକା ? ଲୀନା ସହ ତାର ସମ୍ପର୍କ କଣ ? କାହିଁକି ସେ ଏମିତି ଭାବିବ ? ଲୀନା ତାକୁ 'ଭାଇ' ବୋଲି ଡ଼ାକେ ଏଇଥିପାଇଁ ? ଭାଇବୋଲି ଡ଼ାକିଦେଲେ ସମସ୍ତେ କଣ ସମ୍ପର୍କୀୟ ହେଇଯାନ୍ତି ? ସମ୍ପର୍କ ପାଇଁ ଗୋଟେ ରୁଚି ଥିବା ଦରକାର, ଯାହାକୁ ସେମାନେ ପରସ୍ପରକୁ ଆଦର କରିପାରିବେ ।

ଏଥର ଚିନ୍ତା କରିବାକୁ ଲାଗିଲା ରମେଶ, ଜୟନ୍ତ ଆଉ ଲୀନା ଭିତରେ ଥିବା ସାମ୍ୟକୁ । ଯେଉଁଥିପାଇଁ ଲୀନା ତାକୁ ଭାଇ ବୋଲି ଡ଼ାକିପାରେ - ତା ସାମ୍ନାରେ ବି । ଅବଶ୍ୟ ଜୟନ୍ତ କେବେବି ଭୁଲ୍‌ରେ ତା ସାମ୍ନାରେ ଲୀନା ବୋଲି ସମ୍ବୋଧନ କରିନାହିଁ । କଲେ ସେ ତାକୁ ଜୀଅନ୍ତା ଫାଡ଼ିଦେବ । କେଉଁ ଅଧିକାରରେ ସେ ତା ସ୍ତ୍ରୀକୁ ଏମିତି ସାନ ଭଉଣୀର ସ୍ନେହ ଅଜାଡ଼ି ଦେବ ? ରମେଶ ଜାଣେ, ଜୟନ୍ତ କେବେ ବି ଇମିତି ଭୁଲ୍ କରିବନି, କାରଣ ସେଇଟା ମହାଚାଲାକ୍ । ତାର ମତଲବ ଅଲଗା ।

ୟ୍ୟା ଭିତରେ ରମେଶର ଦେହ ଝାଳେଇବା ଆରମ୍ଭ କରିଛି । ଟିକେ ଡ଼େରିରେ ଘରକୁ ଫେରିଛି । ଆସିଲା ବେଳେ ବାଟରୁ ଖାଇ ଦେଇ ଆସିଛି ବି । ସୋଫା ଉପରେ ବସି ଏବେ କେବଳ ଜୟନ୍ତ ମିଶ୍ରର ସାତପୁରୁଷକୁ ତର୍ପଣ କରୁଛି । କାହିଁକି ଏମିତି ଗୋଟେ କୁଳାଙ୍ଗାରକୁ ତମେ ପଠେଇ ଦେଲ ପୃଥିବୀ ପୃଷ୍ଠକୁ ? ପର ଝିଅ ବୋହୂଙ୍କ ଉପରେ ତାର ସବୁବେଳେ ଆଖି - ସେ ଧ୍ୱଂସ ହେଇଯାଉ, ଯେତେ ଶୀଘ୍ର ସମ୍ଭବ । ତାର ମନେହେଲା, ଏବେ ଖବରଟେ ଆସି ପହଞ୍ଚନ୍ତା କି ଜୟନ୍ତ ମିଶ୍ର ମରିଯାଇଛି ସ୍କୁଟର ଦୁର୍ଘଟଣାରେ ଅଥବା ପାଗଳା ହାତୀଟେ ପିଟି ଦେଇଛି ତାର ଶୁଣ୍ଢ । ଅନ୍ତବୁଜୁଳା ବାହାରି ପଡ଼ିଛି, ମୁଣ୍ଡରୁ ଦହିଗୁଡ଼ାକ ଛେଲା ଛେଲା ପଡ଼ିଛି ଏଠି ସେଠି, ଆଖି ଦିଟା ପଦାକୁ ବାହାରି ଆସିଛନ୍ତି । ଯେମିତି ହେଲେ ବି ତାର ମୃତ୍ୟୁ ହେଇଯାଉ, ଭଗବାନ୍ ! ରମେଶ ଅନୁଭବ କଲା, ଗୋଟେ ଯନ୍ତ୍ରଣା ଭିତରେ ବି ତା ଓଠରେ ଏକ ଆହ୍ଲାଦ ଲାଖି ରହିଛି, ଯିମିତି ମିଳନାନ୍ତକ ନାଟକଟେ ସରିଯାଇଛି, ସେଇମିତି ଅନୁଭବ ତା ଭିତରେ ।

ସେଇମିତି ଏକ ଉଲ୍ଲାସରେ ରମେଶ ସୋଫାରୁ ଉଠି ପଡ଼ିଲା ଓ ଡ୍ରଇଁ ରୁମ୍ ଡେଇଁ ତାର ବେଡ୍ ରୁମ୍‌କୁ ଯିବାର ନିଷ୍ପତ୍ତି ଘୋଷଣା କଲା । ସେ ଜାଣିଥିଲା ଡ୍ରଇଁରୁମ୍‌ର ଆରପଟେ ତାର ବେଡ୍‌ରୁମ୍ । ଯୋଉଠି ଗୋଟେ ଡବଲ୍ ବେଡ୍ ବିଶିଷ୍ଟ ଶେଯ, ଦୁଇଟା ତକିଆ, ଗୋଡ଼ ତଳ ଆଡ଼କୁ ଡ୍ରେସିଂ ଟେବୁଲ୍, ଗୋଟେ ଯୌନପତ୍ରିକା ସେମିତି ପଡ଼ି ରହିଥିବ ସବୁଦିନ ପରି । କିନ୍ତୁ ସେ ବେଡ୍ ରୁମ୍‌କୁ ଯିବ କାହିଁକି ? ସେଠି ହୁଏତ ଲୀନା ବସି ଗୁମୁରି ଗୁମୁରି ଜଳୁଥିବ । ଲୁହ ପୋଛୁ ପୋଛୁ ତାର ଅକ୍ଷମ ସ୍ୱାମୀଟିକୁ ଅଭିଶାପ ଦେଉଥିବ ।

ନିଜର ବିମର୍ଷ ଭାଗ୍ୟକୁ ବାରମ୍ବାର ନିନ୍ଦା କରୁଥିବ । କରୁ । ରମେଶର ରାଗ ହେଲା ଲୀନାର ଏମିତିକା କାଳ୍ପନିକ ଅଭିନୟରେ । କିଏ କହୁଥିଲା ବେ ମତେ ବାହା ହେବାକୁ ବନ୍ଧାତ୍ ଟୋକୀ ? ଏଇଟା କୁଞ୍ଜବନ ନୁହେଁ ଯେ ସବୁଦିନେ ଖାଲି ଟୋକାଙ୍କ ଭିଡ଼ ଚାଲିଥିବ ଏଠି ।

ରମେଶ ଏଥର ଡ୍ରଇଁରୁମ୍‌ର ଭିତର ଦର ଜାରେ ହାତଦେଲା ଓ କୁହୁକ ରାଜ୍ୟର ଯାଦୁପରି ଛାତି ମେଲେଇ ଦେଲା ବିଚରା କବାଟଟି । ଆମନ୍ତ୍ରଣର ଆବେଗ ବେଶ୍ ବାରି ହେଇ ପଡୁଥିଲା । ଘର ଭିତରକୁ ପାଦ ବଢେଇବା ପୂର୍ବରୁ ସେ ଜାଣିସାରିଥିଲା - ଘରଟା ଅନ୍ଧାର । ସ୍ୱଭାବତଃ ତାର ହାତ ଚାଲି ଯାଉଥିଲା ସୁଇଚ୍ ବୋର୍ଡ଼ ପାଖକୁ, ମାତ୍ର କଣ ଭାବି ଅଟକି ଗଲା ।

ଘର ସାରା ଅନ୍ଧାର । ଡ୍ରଇଁରୁମ୍‌ରୁ କିଛି ଆଲୁଅ ଆସି ପଶିଯାଇଛି ବେଡ୍‌ରୁମ୍‌ରେ । ପ୍ରଥମେ ସେ କିଛି ଦେଖିପାରୁନଥିଲା । ଆସ୍ତେ ଆସ୍ତେ ଆଖି ଅଭ୍ୟସ୍ତ ହେଇପଡ଼ିଲା । ସେ ଅନୁମାନ କରିନେଲା, ଲୀନା ବୋଧେ ଶୋଇଯାଇଛି । ତାକୁ ଅଯଥାରେ କୌଣସି କୈଫିୟତ୍ ଦେବାକୁ ପଡ଼ିବନି । ଅତଏବ ସୁଇଚ୍‌ରେ ଟିପ ମାରିଲା ରମେଶ, ଘର ସାରା ଅଲୁଅର ଲହଡ଼ି ଭାଙ୍ଗୁଛି । ରମେଶ ସେ ଆଲୁଅରେ କିଛି ସମୟଯାଏ ଉବୁଟୁବୁ ହେଲା । ଲୀନା ଶୋଇଯାଇଛି, ଶୋଇ ଶୋଇ ଛୋଟ ଘୁଙ୍ଗୁଡ଼ି ମାରୁଛି । ଡ଼ାହାଣ ହାତଟା ଲମ୍ବି ଆସିଛି ଜୁଲି ଉପରକୁ । ଅଭୟ ଦେବା ମୁଦ୍ରାରେ । ବେଶ୍ ଚୁପ୍ ଚାପ୍ ଶୋଇଯାଇଛି ବି ଜୁଲି ।

ଜୁଲି ଉପରେ ଆଖି ପଡ଼ିବା ମାତ୍ରେ ଜୟନ୍ତ ମନେ ପଡ଼ିଯାଏ ରମେଶର । ମନେ ପଡ଼ିବାକୁ ବାଧ୍ୟ ହୁଏ । ଜୁଲିର ଚେହେରା, ଚାଲି ଆଉ ହସ ଭିତରେ ସେ ଜୟନ୍ତର ସାଦୃଶ୍ୟକୁ ହଠାତ୍ ଆବିଷ୍କାର କରେ । ସନ୍ଦେହ କରିବସେ: ଲୀନା ସହ ହୁଏତ ତାର ବିବାହ ଆଗରୁ ଜୟନ୍ତର ସମ୍ପର୍କ ଥିଲା ।' ନଚେତ୍ ଜୁଲି ଭିତରେ ସେ ଜୟନ୍ତକୁ ... ?

ରମେଶ ଭଲ କରି ଦେଖିଲା, ଲୀନା ଶୋଇଯାଇଛି । ସାମାନ୍ୟ ଖଡ଼୍‌ଖାଡ଼୍ ଭିତରେ ବି ତାର ନିଦ ଭାଙ୍ଗିଯିବାର କୌଣସି ସମ୍ଭାବନା ଏଇନେ ନାହିଁ । ଅତଏବ ସେ ସାଙ୍ଗେ ସାଙ୍ଗେ ଶୋଇଯିବା ଦରକାର । ଶୋଇବା ପୂର୍ବରୁ ଡ୍ରଇଁରୁମ୍ ବାହାରପଟ କବାଟର ଭିତର ଖିଡ଼ିକି ମଧ୍ୟ ଦେଇଦେବା ଦରକାର । ଖିଡ଼ିକି ଦବା କଥା ଚିନ୍ତା କରିବା ମାତ୍ରେ, ଖିଡ଼ିକି ଖୋଲା ଥିବା ଘଟଣାଟା ରମେଶକୁ ଅସଂଗତ ମନେ ହେଲା । ଲୀନା ଏତେଟା ଦାୟିତ୍ୱଶୂନ୍ୟ ନୁହେଁ । ଶୋଇଯିବା ଆଗରୁ ଭିତରପଟୁ ଦରଜା ବନ୍ଦ କରିଦେବା ତାର ଉଚିତ ଥିଲା । ତେବେ ଏମିତି ବେପରୁଆ ହେଇଯିବା ପଛରେ ଆଉ କଣ କାରଣ ଥାଇପାରେ ?

ରମେଶ ଅନୁଭବ କଲା, ବେହେରା ହାତରେ ପଠେଇ ଥିବା କାଞ୍ଜିଭରମ୍ ଶାଢୀଟା ଲୀନା ଆଜି ପିନ୍ଧି ନାହିଁ । ଏମିତିକି ତା ଜନ୍ମୋତ୍ସବର ମୁହୂର୍ତ୍ତରେ ବି ଜୁଲିକୁ - ବେବି ସୁଟ୍ ପିନ୍ଧାଇବା କଥା ଭୁଲିଯାଇଛି । ଭୁଲି ଯାଇନି ପ୍ରକୃତରେ । ଅଭିମାନ । ରମେଶ ଉପରେ ପ୍ରତିଶୋଧ । ତେବେ ଶୋଇବା ଆଗରୁ ଡ୍ରଇଁ ରୁମ୍ର ବାହାର ଦରଜାଟା ବନ୍ଦ କରିବାକୁ ଭୁଲି ଯିବାଟାକୁ ସେ ଗ୍ରହଣ କରିପାରୁ ନଥିଲା । କଣ ହୋଇପାରେ ? ଜୟନ୍ତ ଆସିଥିଲା କି ?

ଜୟନ୍ତ ନିଶ୍ଚୟ ଆସିଥିଲା । ଏଇଟା ତା ପାଇଁ ବାଟ । ଜୁଲିର ଜନ୍ମୋତ୍ସବ । ଫୁଲ ତୋଡ଼ା ଦବା ବାହାନାରେ ସେ ନିଶ୍ଚୟ ଆସିଥିଲା । ଜୁଲିର ଆକର୍ଷଣ ନୁହେଁ, ଲୀନା । ତାର ସାନ ଅଥଚ ଗେହ୍ଲା ଭଉଣୀ ପାଖକୁ ଲୁଚି ଲୁଚି ଆସିଥିଲା ରମେଶର ଅନୁପସ୍ଥିତିରେ । ରମେଶର ମୁଣ୍ଡକୁ ପିତ୍ତ ଚଢି ଯାଇଥିଲା । ମନେ ହେଉଥିଲା ସେ ଯିମିତି ଖସି ପଡ଼ିବ ଏଇନେ, ତାର ମୁଣ୍ଡ ଫାଟିଯିବ । ରକ୍ତ ସବୁ ବାଧା ମାନିବେନି । ସେ ଚିତ୍କାର କରିବ । ସେଇ ଚିତ୍କାରରେ ଲୀନାର ନିଦ ଭାଙ୍ଗିଯିବ । ହେଲେ ସବୁ ଦେଖିବା ପରେ ବି ଲୀନା ଚୁପ୍ ଚାପ୍ ଶୋଇଯିବ । ସତେ ଯେମିତି ତା ପାଇଁ ଏଇଟା ସିମିତିକିଛି ବିଶେଷ ଘଟଣା ନୁହେଁ । କିନ୍ତୁ ସେ ଯଦି ଜୟନ୍ତ ହୋଇଥାନ୍ତା ?

ନିଜକୁ ଜୟନ୍ତ କରିନେବାର ପ୍ରତିଜ୍ଞାରେ ରମେଶ ନିଶ୍ଚିତ ହେଲା, ତା ବେଡ୍‌ରେ ଅନ୍ୟ ଜଣେ ଜୟନ୍ତ ଶୋଇଥିଲା କିଛି ସମୟ ଆଗରୁ, ଠିକ୍ ଲୀନାର ପାଖାପାଖି । ବେଡ୍‌ରୁ ଝାଳଗନ୍ଧ ବାହାରୁଛି କି ନାହିଁ ଲେପଟେଇ ପଡ଼ି ସେ ଶୁଙ୍ଘିବାକୁ ଯାଉଥିବା ବେଳେ ଦେଖିଲା, ତାର ଶୋଇବା ତକିଆଟିରେ ବି ବଡ଼ ଖାଲଟାଏ ହେଇଯାଇଛି ।

# ଅନୁକଂପାର ହତ୍ୟାକାରୀ

ତଦନ୍ତ ଉଦ୍ଦେଶ୍ୟରେ ଗାଡ଼ି ବାହାର କରିବା ପୂର୍ବରୁ ହର ପ୍ରସାଦଙ୍କୁ ଯେଉଁ ଦୁଇଟି ଘଟଣା ବିଶେଷ ଭାବେ ବିଚଳିତ କରିଦେଲା, ତା ହେଲା; ଦୀର୍ଘ ପଚିଶ ବର୍ଷ ତଳେ ବିବାହ ବେଦୀରେ ଶାଶୁଙ୍କଠାରୁ ଉପହାରସ୍ୱରୂପ ପାଇଥିବା ଫୁଲଦାନୀଟି ଅଚାନକ ତଳେ ପଡ଼ି ଭାଙ୍ଗିଯିବା ଓ କନ୍ୟା ମଧୁମିତାର ବୟଫ୍ରେଣ୍ଡ ସୁମନ୍ତ ସହ ମତାନ୍ତରରୁ ମନାନ୍ତର ଘଟି ପରସ୍ପରକୁ ଦମ୍ପତି ରୂପେ ଗ୍ରହଣ କରିନେବାର ପ୍ରସ୍ତାବକୁ ନାକଚ କରି ବସିବା ।

ଏଇ ଦୁଇଟି ଘଟଣାକୁ କେନ୍ଦ୍ରକରି ହୁଏତ ସେ କିଛି ଗୋଟେ କରିବସିବେ ବୋଲି ଆଶଙ୍କା କରୁଥିଲେ ସ୍ତ୍ରୀ । ମାତ୍ର ସେଭଳି କିଛି ଘଟିଲା ନାହିଁ । ପୂର୍ବ ଦିନମାନଙ୍କ ଭଳି ଜଳଖିଆ ନ ଖାଇ ବାହାରକୁ ବାହାରିଗଲେ ହରପ୍ରସାଦ ଓ ସ୍ତ୍ରୀଙ୍କର ଏଥିଯୋଗୁଁ ପ୍ରତିବାଦ ଅଥବା ଅନୁନୟ କରିବାର ସାହସ ପାଇଲା ନାହିଁ ।

ଘଟଣାସ୍ଥଳରେ ପହଞ୍ଚିବାକୁ ଅବଶ୍ୟ କିଛି ସମୟ ଲାଗିଲା ତାଙ୍କୁ; କାରଣ ହେଡ୍‌କ୍ୱାର୍ଟରଠୁ ଗାଁଟି ଥିଲା ଅନ୍ୟୁନ ଚାଳିଶି କିଲୋମିଟର । ପୂର୍ବାହ୍ନର ସୂର୍ଯ୍ୟାଲୋକ ଲାଗୁଥିଲା କିଛିଟା ଆତ୍ମୀୟ । ଗାଁର ପରିବେଶ ଥିଲା ମୋଟାମୋଟି ନିରୋଳା, କାରଣ ଗୋଟିଏ ମାତ୍ର ପାଞ୍ଚ ସାତବର୍ଷର ପିଲାକୁ ଛାଡ଼ିଦେଲେ ଗାଁ ଦାଣ୍ଡରେ କେହି ଥିବାର ଲକ୍ଷ୍ୟ କରିପାରିଲେନି ହରପ୍ରସାଦ । ପ୍ରାୟ ପ୍ରତ୍ୟେକ ଯେ ଯାହାର କାର୍ଯ୍ୟରେ ଯୋଗ ଦେଇ ସାରିଥିଲେ କି କଣ ?- ଏଇଭଳି ମନେ ହେଲା ତାଙ୍କୁ ।

ଏକମାତ୍ର ବୁଲୁଥିବା ସେଇ ଛୋଟ ପିଲାଠୁ ନିଜର ଆବଶ୍ୟକୀୟ ଠିକଣା ପାଇବା ଲାଗି ହାତ ଠାରି ଡାକିବା ପୂର୍ବରୁ ତାଙ୍କ ଭିତରେ ଫୁଲଦାନୀ ଓ ମଧୁମିତାର ଅସହାୟାର୍ଦ୍ର

ମୁହଁଟି ଏକାକାର ହୋଇଯିବାର ସେ ଅନୁଭବ କଲେ । ପିଲାଟିର ଇଙ୍ଗିତରେ କିଛିଟା ସନ୍ଦିଗ୍ଧ ଭାବ ସୃଷ୍ଟି ହୋଇଥିଲେ ବି ସେ ଏଥର ସେଇ ଘର ଆଡ଼କୁ ଚାଲିଲେ ଓ ଦରଜାରେ ଆଘାତ କରିବା ପୂର୍ବରୁ ପକେଟରେ ଥିବା ପେପର କଟିଂଟିକୁ ବାହାର କରି ଦୋହରାଇବାକୁ ଲାଗିଲେ ଓ ସମ୍ବାଦପତ୍ରରେ ବାହାରିଥିବା ଦୁର୍ଘଟଣାର ଶୀର୍ଷକଟି ତାଙ୍କୁ ଯେତିକି ଆକର୍ଷିତ କଲାନାହିଁ ତାଠୁ ବେଶି ଆଶ୍ଚର୍ଯ୍ୟ କଲା ବନ୍ଧନୀସ୍ଥ ପାଇକା ଅକ୍ଷରରେ ମୁଦ୍ରିତ ସ୍ୱତନ୍ତ୍ର ପ୍ରତିନିଧିଙ୍କଠାରୁ ପ୍ରାପ୍ତ ଅସଂପୂର୍ଣ୍ଣ ବାକ୍ୟଟି । ପୁନର୍ବାର ଦରଜାରେ ଆଘାତ କରିବା ଲାଗି ଚିନ୍ତା କରୁ କରୁ ନିଜର ନିଶ୍ୱାସ ପ୍ରଶ୍ୱାସର ଗତିକୁ ଠଉରାଇ ନେଲେ ହରପ୍ରସାଦ ।

ଦରଜା ଖୋଲିଲା ।

ହରପ୍ରସାଦଙ୍କ ଆଦେଶ ପାଇ ଯେଉଁମାନେ ତାଙ୍କ ପାଖରେ ଆସି ଠିଆ ହେଲେ ସେମାନେ ହେଲେ ଯଥାକ୍ରମେ ଅନୁକମ୍ପାର ସ୍ୱାମୀ ମୁକ୍ତିକାନ୍ତ, ଶ୍ୱଶୁର ଶ୍ରୀଧର, ଶାଶୁ ସୁଲୋଚନା ଓ ନଣନ୍ଦ ମୀନାକ୍ଷୀ ।

ମୁକ୍ତିକାନ୍ତକୁ ଜେରା କରିବା ଉଦ୍ଦେଶ୍ୟରେ ଯେଉଁ କେତୋଟି ପ୍ରଶ୍ନ କରାଗଲା, ସେଥିରେ ମୁକ୍ତିକାନ୍ତ ବିଚଳିତ ନ ହୋଇ ବରଂ କୁଣ୍ଠା ପ୍ରକାଶ କରୁଥିବା ଭଳି ମନେହେଲା ହରପ୍ରସାଦଙ୍କୁ । ତେବେ ଏଇ କୁଣ୍ଠା ପ୍ରକାଶ କରିବାର ପ୍ରକୃତ କାରଣ ଉଦ୍‌ଘାଟିତ ହେଲା, ଯେତେବେଳେ ମୁକ୍ତିକାନ୍ତ ହରପ୍ରସାଦଙ୍କୁ ଘରର ପଛପଟକୁ ଡାକିନେଲା ଓ କିଛି ନ କହି ଗୋଟାଏ ପଥର ଉପରେ ନଥ୍ କରି ବସିପଡ଼ିଲା ।

ହରପ୍ରସାଦ ଅପେକ୍ଷା କଲେ, ମୁକ୍ତିକାନ୍ତ ଆଡୁ ପ୍ରଥମେ କିଛି ମନ୍ତବ୍ୟ ଆସିବା ପର୍ଯ୍ୟନ୍ତ । ତାହା ହିଁ ହେଲା । ଏଇ ନିରୋଳାରେ ନିଜର ସମସ୍ତ ଗ୍ଲାନିକୁ ହରପ୍ରସାଦଙ୍କ ସମ୍ମୁଖରେ ଉପସ୍ଥାପନ କଲା ମୁକ୍ତିକାନ୍ତ ।

ତିନିବର୍ଷ ତଳେ ମୁକ୍ତିକାନ୍ତ ଅନୁକମ୍ପାକୁ ବିବାହ କରିଥିଲା ଓ ଏଇ ବିବାହ ପ୍ରେମଜନିତ ନହେଲେ ବି ପରସ୍ପର କିଛିଟା ଦୂରରୁ ପରିଚିତ ହେବାରେ କୌଣସି ଅସୁବିଧା ନ ଥିଲା । ଅନୁକମ୍ପାର ବାପଘର ଥିଲା ମୁକ୍ତିକାନ୍ତର ଗାଁଠାରୁ ଅଳ୍ପ ଦୂର ଓ ନିକଟସ୍ଥ ଗାର୍ଲସ ହାଇସ୍କୁଲ୍‌ଠୁ ଆରମ୍ଭ କରି ସ୍ଥାନୀୟ କଲେଜରେ ପଢ଼ିବା ବେଳେ ହିଁ ଅନୁକମ୍ପା ସହ ମୁକ୍ତିକାନ୍ତର ଅପରିକଳ୍ପିତ ସାକ୍ଷାତ ଘଟୁଥିଲା, ଅନେକ ସମୟରେ । କ୍ରମଶଃ ଉଭୟଙ୍କର ଅଭିବାହକ ନିଜ ସନ୍ତାନର ଦାମ୍ପତ୍ୟ ଜୀବନ ସମ୍ପର୍କରେ ଚିନ୍ତା ଓ କାର୍ଯ୍ୟ କଲେ ଓ ପାରମ୍ପରିକ ରୀତିରେ ମୁକ୍ତିକାନ୍ତ ତିନିବର୍ଷ ତଳେ ଅନୁକମ୍ପାକୁ ସ୍ତ୍ରୀ ରୂପେ ପାଇ ନିଜକୁ ଭାଗ୍ୟବାନ ମନେକଲା । ପ୍ରତ୍ୟେକେ

ଚାକିରିଆ ସ୍ୱାମୀ ଭଳି ବିବାହର ଅଳ୍ପ କେଇମାସ ପରେ ସେ ତାର ସ୍ତ୍ରୀକୁ ସହରକୁ ନେବା ଲାଗି ଇଚ୍ଛା । କଲା ଓ ଏହା ପିତାମାତାଙ୍କ ନିକଟରେ ସିଧାସଳଖ ପ୍ରକାଶ କରି ନ ପାରି ହୋଟେଲ୍‌ରେ ଖାଇବା ଦ୍ୱାରା କିପରି ପେଟରୋଗ ବଢ଼ିବାରେ ଲାଗିଛି, ସାର୍ଟପ୍ୟାଣ୍ଟ ଇସ୍ତ୍ରୀ କରିବାବେଳେଧୋବା ଇଣକ ଖାମଖିଆଲରେ ବି ସେଥିରେ ପୋଡ଼ାଦାଗ ବସାଇଦେବାକୁ ଆଦୌ ଖାତିର କରୁନାହିଁ ଇତ୍ୟାଦି ବାରମ୍ବାର କହିବାକୁ ଲାଗିଲା । ମୁକ୍ତିକାନ୍ତର ଉଦ୍ଦେଶ୍ୟ ବୁଝିବାରେ ପିତାମାତାଙ୍କୁ ବିଶେଷ ଅସୁବିଧା ହୋଇ ନ ଥିଲେ ବି ସେମାନେ ତାଙ୍କର ବୋହୂଟିକୁ ଏତେ ଜଲ୍‌ଦି ସହରାଭିମୁଖୀ କରାଇବାକୁ ଚିନ୍ତା କରି ନ ଥିଲେ । ତେଣୁ ସେମାନେ ମୁକ୍ତିକାନ୍ତକୁ ପରିବାରର ସାମ୍ପ୍ରତିକ ଆର୍ଥିକ ସମସ୍ୟା ସମ୍ପର୍କରେ ବାରମ୍ବାର ଅବଗତ କରାଇଲେ ଓ ବିବାହୋନ୍ମୁଖୀ ଭଉଣୀ ମୀନାକ୍ଷୀର ଭବିଷ୍ୟତର ଉଦାହରଣ ଦେଇ କିଛି ପଇସା ବଞ୍ଚାଇବାକୁ ପରାମର୍ଶ ଦେଇଥିଲେ । ମୁକ୍ତିକାନ୍ତ ପରିସ୍ଥିତିକୁ ବିଜ୍ଞ ଲୋକ ଭଳି ବିଚାରକୁ ନେଲା ଓ ଏହାର ଏକ ସମାଧାନ ଖୋଜିବାକୁ ଯାଇ ସହରରୁ ପ୍ରତି ଶନିବାର ସନ୍ଧ୍ୟାରେ ଆସି ଘରେ ପହଞ୍ଚି ପୁନଶ୍ଚ ସୋମବାର ଦିନ ଭୋର୍‌ରୁ ନିକଟତମ ବସ୍‌ଷ୍ଟାଣ୍ଡରୁ ଗାଡ଼ି ଧରି ସହରରେ ଅଫିସ୍ କରିବାକୁ ଲାଗିଲା ।

ଏଇଭଳି ବେଶ୍ ଆରାମରେ କିଛିବର୍ଷ ଅତିକ୍ରାନ୍ତ ହେଲା ଓ ଅନୁକଂପାର ସେଥିପ୍ରତି କୌଣସି ପ୍ରତିବାଦ ମଧ୍ୟ ନ ଥିଲା । କ୍ରମଶଃ ଘଟଣା ଅନ୍ୟ ପ୍ରକାରର ମୋଡ଼ ନେଲା । ଅନୁକଂପାର ଶାଶୁ ଶ୍ୱଶୁର ମଝିରେ ମଝିରେ ତା ସହ କୌଣସି ଛୋଟ କଥାକୁ ନେଇ କଳି କରୁଥିବାର ଖବର ମୁକ୍ତିକାନ୍ତର କାନରେ ବାଜିଲା ଓ ଚୂଡ଼ାନ୍ତ ଭାବେ ମୀନାକ୍ଷୀ ସହ ଅନୁକମ୍ପାର ଯେଁଦିନ ଆଉ ପଡ଼ିବାର ସମ୍ଭାବନା ଦେଖାଗଲା ନାହିଁ, ସେଦିନ ମୁକ୍ତିକାନ୍ତ ଅନୁକଂପାକୁ ସହରକୁ ନେଇଯିବା ଲାଗି ନିଷ୍ପତ୍ତି କଲା ଓ ଘଟଣାଟି ହଠାତ୍ କାର୍ଯ୍ୟକାରୀ କରିବା ସପକ୍ଷରେ ଅନୁରକ୍ତି ପ୍ରକାଶ ନ କରି ଅନୁକଂପାକୁ ତାର ବାପ ଘରକୁ ପଠାଇ ଦେବାଲାଗି ସ୍ଥିର କଲା ।

ଅନୁକଂପାର ମୃତ୍ୟୁ ପୂର୍ବ ସପ୍ତାହର ଶନିବାର ଦିନ ଘରକୁ ଆସି ଆଗଭଳି ସୋମବାର ଦିନ ସହରକୁ ଗଲା ନାହିଁ ବରଂ ନିକଟସ୍ଥ ଡାକଘରକୁ ଯାଇ ପ୍ରବଳ ଅସୁସ୍ଥତାର କାରଣ ଦର୍ଶାଇ ଅଫିସ୍‌କୁ ତାରବାର୍ତ୍ତା ପଠାଇଲା ଓ ଫେରିବା ସମୟରେ ଅନୁକଂପା ନାମରେ ଆସିଥିବା ଚିଠିଟିଏ ଡାକପିଅନ ମୁକ୍ତିକାନ୍ତ ହାତକୁ ବଢ଼ାଇ ଦେଲା । ଚିଠିଟି ଡାକପିଅନ ହାତରୁ ଆଣିବାବେଳେ ମୁକ୍ତିକାନ୍ତ ଟିକିଏ ଅସୁସ୍ଥ ଅନୁଭବ କଲା ଓ ତାର ହାତଗୋଡ଼ରେ ଆଦୌ ଶକ୍ତି ନ ଥିବା ଭଳି ତାକୁ ଲାଗିଲା । ତଥାପି ଘରକୁ ଆସୁ ଆସୁ ବାଟରେ ଲମ୍ବ ଓ ପ୍ରସ୍ଥରେ ଲଫାପାଠାରୁ କିଛିଟା ଏଇ ମୁଦା ଚିଠିଟିକୁ ମୁକ୍ତିକାନ୍ତ ଖୋଲିବାକୁ ଚେଷ୍ଟାକଲା

ଓ ଏହି କାର୍ଯ୍ୟଟି କରିବା ପୂର୍ବରୁ ଏହା କୌଣସି ପ୍ରିୟଜନର ବିବାହଜନିତ ଆମନ୍ତ୍ରଣ ପତ୍ର ହୋଇଥିବ ଭାବି ଚିଠିଟିକୁ ଖୋଲିବାକୁ ଲାଗିଲା ଓ ଖୋଲିସାରିବା ପରେ ମନେହେଲା ତାର ହୃତସ୍ପନ୍ଦନ ହଠାତ୍ ବନ୍ଦ ହେଇ ଯାଇଛି । ଆକାଶର ସୂର୍ଯ୍ୟ ସ୍ଥିର ହୋଇଯାଇଛନ୍ତି ଓ ନଦୀର ଗତି ରହିତ ହେବା ସଂଗେ ସଂଗେ କୁଳୁକୁଳୁ ସଂଗୀତଟି ବି ଉଭେଇଯାଇଛି ।

ଲଫାପା ଭିତରେ ଥିଲା ଗୋଟେ ଫଟୋ ଓ ଚିଠିଟିଏ । ଚିଠିଟି ଯଦିଓ ଜଣେ ପୁରୁଷଠାରୁ ଆସିଥିଲା ମାତ୍ର ସେଥିରେ ଅନୁକମ୍ପାକୁ ବାରମ୍ବାର ହୃଦୟେଶ୍ୱରୀ, ଏକାନ୍ତ ପ୍ରାଣର ଓ ପୂର୍ବଜନ୍ମର ସାଥୀ ବୋଲି ସମ୍ବୋଧନ କରାଯାଇଥିଲା ଓ ଏହାକୁ ଶେଷ କରିବା ପାଇଁ କମ୍ କଷ୍ଟ କରିବାକୁ ପଡ଼ି ନ ଥିଲା ମୁକ୍ତିକାନ୍ତକୁ । ଚିଠିଟିକୁ ହୁଏତ ଗୋଟିଏ ମନ୍ଦବ୍ୟକ୍ତିର କାର୍ଯ୍ୟ ଅଥବା ଗୁଜବ ବୋଲି ମୁକ୍ତିକାନ୍ତ ଧରି ନେଇଥାନ୍ତା ଯଦି ସେଥିରେ ଯୁବକ ଜଣକ ଅନୁକମ୍ପାକୁ ଅଶ୍ଳୀଳ ଭାବେ ଜାବୋଡ଼ି ଧରି ଫଟୋ ଉଠାଇ ନ ଥାନ୍ତା । ମୁକ୍ତିକାନ୍ତକୁ ଆଉ ବୁଝିବାକୁ ଡେରି ହେଲାନି ଯେ, ତାରି ଅଫିସ୍‌ରେ ସେଇ ବଜାରୀ ଟୋକା ସହିତ ଅନୁକକଂପାର ସମ୍ପର୍କ ବିବାହ ପୂର୍ବରୁ ରହିଥିଲା ଓ ବୋଧହୁଏ ସେଇଥିପାଇଁ ସେଇ ବଜାରୀ ଟୋକାଟି ଅହେତୁକ ଭାବେ ତା ପ୍ରତି ବ୍ୟଙ୍ଗୋକ୍ତି ପ୍ରଦର୍ଶନ କରୁଥିଲା । ଏହା ଭାବିବା ମାତ୍ରେ ସେ ନିଜ ଭାଗ୍ୟକୁ ବାରମ୍ବାର ଦାୟୀ କଲା ଓ ଏହାର ସ୍ଥାୟୀ ସମାଧାନ ନ ହେବା ପର୍ଯ୍ୟନ୍ତ ଶାନ୍ତି ପାଇବା ଅସମ୍ଭବ ବୋଲି ନିଶ୍ଚିତ ହେଲା, ସେଦିନ ତାର ଖିଆପିଆରେ କୌଣସି ନିୟମିତତା ରହିଲାନି । ଏପରିକି ରାତିରେ ଶୋଇବା ବେଳେ ଯେତେବେଳେ ଅନୁକଂପା ପୂର୍ବଭଳି ମୋଡ଼ି ଦେବାକୁ କହିଲା, ସେତେବେଳେ ସବୁଠୁ ବେଶି ଅସୁସ୍ଥ ଅନୁଭବ କଲା ସେ ଓ ଏହି ମିଛ ଆନ୍ତରିକତା ନ ଦେଖାଇବାକୁ କହିଲା । ଏହାର ପ୍ରତ୍ୟୁତ୍ତର ଦେବାକୁ ଯାଇ ଅନୁକମ୍ପା ତାର ଛାତିରେ ହାତ ରଖି ଉଷ୍ମତା ମାପିଲା ଓ କଣ ଭାବି ସାମାନ୍ୟ ହସି ତା ପାଖରେ ଲୋଟିପଡ଼ିଲା । ପ୍ରକୃତରେ କହିବାକୁ ଗଲେ, ମୁକ୍ତିକାନ୍ତ ସେଦିନ ରାତିରେ ଆଦୌ ଶୋଇ ପାରିଲାନି ବରଂ ତାର ଭୀଷଣ ପାଟି କରି କାନ୍ଦିବାକୁ ଇଚ୍ଛା ହେଲା ।

ଯା ହେଉ, ତାର ଦୁଇଦିନ ପରେ ଅନୁକଂପାକୁ ବିଷ ଦେଇ ମୁକ୍ତିକାନ୍ତ ହତ୍ୟା କଲା । କଣ ଆଉ କରିପାରିଥାନ୍ତ ସେ ? ଜଣେ ପୁରୁଷ ତାର ସ୍ତ୍ରୀକୁ ପ୍ରାଣଭରି ଭଲ ପାଉଥିବା ବେଳେ, ସେ ସ୍ତ୍ରୀ ଜଣକ ପୁରୁଷ ପ୍ରତି ପ୍ରତାରଣା କରିବାଠୁଁ ବର୍ବରତା କିଛି ନାହିଁ ବୋଲି ସେ ଯୁକ୍ତି କଲା । ଏଇତକ କରିସାରିବା ପରେ ସେ ପୋଲିସ୍ ସବ-ଇନ୍‌ସପେକ୍ଟର ହରପ୍ରସାଦଙ୍କୁ ଚାହିଁଲା ଓ ଆଶ୍ୱସ୍ତିର ନିଶ୍ୱାସ ଛାଡ଼ିଲା ।

ହରପ୍ରସାଦ ତାର ବୟାନ ସବୁକୁ ଧୈର୍ଯ୍ୟର ସହ ଶୁଣି ପୁଣି ଘରର ଅଗଣା ପାଖକୁ

ଆସିଲେ ଓ ଆସିବା ପୂର୍ବରୁ ତାଙ୍କ ହାତରେ ମୁକ୍ତିକାନ୍ତ ସେଇ ଫଟୋ ଓ ଚିଠିଟି ଧରାଇଦେଲା । ଅଗଣାରେ ପୂର୍ବରୁ ମୁକ୍ତିକାନ୍ତର ବାପା, ମାଆ ଓ ଭଉଣୀ ତାଙ୍କର ଅପେକ୍ଷାରେ ଥିଲେ ।

ଏଥର ହରପ୍ରସାଦ, ମୁକ୍ତିକାନ୍ତର ବାପାଙ୍କ ପାଖକୁ ଆସିଲେ ଓ ସମ୍ମାନ ଦେଖାଇବା ଛଳରେ ମୁକ୍ତିକାନ୍ତର ବାପା ଶ୍ରୀଧର ଠିଆ ହେଇଗଲେ । ପଚାଶୋତ୍ତର ବୟସ୍କ ଶ୍ରୀଧରଙ୍କ ମୁଣ୍ଡର ବାଳ କ୍ରମଶଃ ଧଳା ଓ ପାନ ବୋଉଥିବା ଦାନ୍ତ କଳା ପଡ଼ିଯିବା ଭିତରେ ଏକ ନୀରବ ପ୍ରତିଯୋଗିତା ଚାଲିଥିବା ଭଳି ମନେ ହେଉଥିଲା । ହରପ୍ରସାଦ ଏଥର ଅନୁକଂପାର ମୃତ୍ୟୁ ସମ୍ପର୍କୀୟ ପ୍ରଶ୍ନଟିଏ କଲେ ଓ ଉତ୍ତର ଦେବା ପୂର୍ବରୁ ଶ୍ରୀଧର ପ୍ରଥମେ ସ୍ତ୍ରୀ ସୁଲୋଚନାକୁ ଚାହିଁଲେ । ଶ୍ରୀଧର ଯେପରି ସାହସ ପାଇଲେ । ମଝିରେ ମଝିରେ ସୁଲୋଚନା ମଧ୍ୟ ତାଙ୍କୁ ସାହାଯ୍ୟ କରୁଥିଲେ । ହରପ୍ରସାଦ ନୀରବରେ ସେମାନଙ୍କ ବୟାନକୁ ପଡ଼ୋଶୀ ଭଳି ଶୁଣିବା ଛଡ଼ା ଆଉ ଯେପରି କିଛି କରୁ ନ ଥିଲେ ।

ବିବାହ ପାଇଁ ଅନେକବାର ଅନୁକଂପାର ବାପା ମୁକ୍ତିକାନ୍ତର ବାପାଙ୍କୁ ପୁନଃର୍ବିଚାର ପାଇଁ ଅନୁରୋଧ କରିଥିଲେ ହେଁ ଶ୍ରୀଧର ଏଇ ପ୍ରସ୍ତାବକୁ ବାରମ୍ବାର ନାକଚ କରି ଆସିଥିଲେ ବିଭିନ୍ନ କାରଣ ଦର୍ଶାଇ। ସେ ସବୁ ଭିତରେ ପୁତ୍ରର ସ୍ୱଳ୍ପ ବୟସ, ଆଜିକାଲିର ପିଲାଙ୍କ ମତିଗତି ଓ ଝିଅ ମୀନାକ୍ଷୀର ବିବାହ ଆଦି ଘଟଣାମାନ ଅନ୍ତର୍ଭୁକ୍ତ ଥିଲେ ମଧ୍ୟ ପ୍ରକୃତପକ୍ଷେ ଶ୍ରୀଧର ପୁଅକୁ ବିବାହ ଦେଇ କିଛିଟା ମୋଟା ଅଙ୍କର ଅର୍ଥ ଉପାର୍ଜନ କରିବାକୁ ଚାହୁଁଥିଲେ । ଏପରିକି ମୀନାକ୍ଷୀର ବିବାହ ପାଇଁତାଙ୍କୁ ଯେପରି କୌଣସି ପରିଶ୍ରମ କରିବାକୁ ନ ପଡ଼େ, ସେଥିପାଇଁ ଦାବିର ଏକ ଦୀର୍ଘ ତାଲିକା ସେ ଅନ୍ତତଃ ଆଗରୁ ପ୍ରସ୍ତୁତ କରି ସାରିଥିଲେ ।

ଅବଶେଷରେ ଅନୁକଂପାର ବାପା ଶ୍ରୀଧରର ପ୍ରସ୍ତାବକୁ ଗ୍ରହଣ କରିନେଲେ ଓ ଦୁହେଁ ଏଣିକି ପରସ୍ପରକୁ ସମୁଦି ଡାକିବାର ବାଟ ସଫା କରିଦେଲେ । ନିର୍ଦ୍ଧାରିତ ଦିନର ସପ୍ତାହକ ପୂର୍ବରୁ ଯୌତୁକର ମୁଖ୍ୟ ଅଂଶଗୁଡ଼ିକ ଶ୍ରୀଧରର ଘରକୁ ଆସିଯାଇଥିଲା ଓ ଏହା ପରେ ଶ୍ରୀଧର ଯେ ହାରିଯିବେ ନାହିଁ ଭାବିଲେ ଓ ବେଶ୍ ଧୁମ୍‌ଧାମ୍‌ରେ ପୁଅର ବିଭାଘର ସମାପନ କଲେ । ମାତ୍ର ଦାବି ବାବଦକୁ ମୁଖ୍ୟ ଅଂଶ ଯଥା ସ୍କୁଟର, ଗଦରେଜ ଆଲ୍‌ମିରା ଓ ଫ୍ରିଜ୍ ଆଦିରେ ଅନେକ ପଇସା ଖର୍ଚ୍ଚ କରିବା ପରେ ଅନୁକଂପାର ବାପା ଦେବାଳିଆ ହୋଇଯାଇଥିଲେ କହିଲେ ଭୁଲ୍ ହେବନାହିଁ । ତେଣୁ ସେ କଥା ଦେଇଥିବା ତାଲିକାର ଅଧିକାଂଶ ଦାବିକୁ ଠିକ୍ ସମୟରେ ପୂରଣ କରି ପାରିଲେନି ଓ ଶ୍ରୀଧରଙ୍କର ମନେ ହେଲା ସେ ପ୍ରଚଣ୍ଡ ଭାବରେ ହାରିଯାଇଛନ୍ତି । ତେବେ ଅନେକ ଦାବି ଭିତରୁ ସୁନାଗହଣା ଓ ବମ୍ବେଇ ପାର୍ଟନ୍ ଖଟ ଦୁଇଟି ଯୋଗୁଁ ଶ୍ରୀଧର ରାତିସାରା ଶୋଇ ନ ପାରି ସେ ସମ୍ପର୍କରେ ଚିନ୍ତା କରିବାକୁ ଲାଗିଲେ ।

କିଛିଦିନ ଚିନ୍ତା କରିବା ପରେ ସେ ନିଶ୍ଚିନ୍ତ ହେଲେ ଯେ, ଏହାଦ୍ୱାରା ବିଶେଷ କିଛି ଲାଭ ହୋଇନାହିଁ, ବରଂ ଏ ସମ୍ପର୍କରେ କିଛି ଗୋଟେ କରାଯାଉ ବୋଲି ସେ ଅନୁଭବ କରୁଥିଲେ । ବିଭାଘର ମାସକ ପରେ ଅନୁକମ୍ପାର ବାପା ଝିଅକୁ ନେବାପାଇଁ ପ୍ରସ୍ତାବ ନେଇଆସିଲେ ଏବଂ ଏହା ଏକ ଉପଯୁକ୍ତ ସମୟ ଭାବି ଶ୍ରୀଧର ତାଙ୍କର ଦାବିମାନଙ୍କ ସମ୍ପର୍କରେ ପ୍ରଶ୍ନ ଉଠାଇଲେ । ଅବଶ୍ୟ ଏଇ ଦାବି ସମ୍ପର୍କରେ ପ୍ରଶ୍ନ ଉଠିବାର ଆଶଙ୍କା କରିଥିଲେ ଅନୁକଂପାର ବାପା । ତେଣୁ ଅନେକ ଆଗରୁ ମୁଖସ୍ଥ କରିଥିବା ଭଂଗୀରେ ସେ ସମୁଦିଙ୍କର ହାତ ଧରି ପକାଇ ତାଙ୍କୁ କ୍ଷମା କରିଦେବା ଲାଗି କହିଲେ । ମାତ୍ର ଏଇ ଶବ୍ଦର ଅର୍ଥ ଏଭଳି ବ୍ୟାପକ ଥିଲା ଯେ, ଶ୍ରୀଧର ସେଥିରୁ ବିଭିନ୍ନ ନିଷ୍କର୍ଷରେ ଉପନୀତ ହେଲେ । ଯେତେବେଳେ ସେ ନିଶ୍ଚିତ ହେଲେ ଯେ, ତାଙ୍କର ପ୍ରାପ୍ୟଗୁଡ଼ିକ କ୍ରମଶଃ ଦୂରକୁ ଚାଲିଯାଉଛନ୍ତି, ସେତେବେଳେ ତାଙ୍କର ସର୍ବାଙ୍ଗ ଥରିବାକୁ ଲାଗିଲା ଓ ସେ ତାଙ୍କର ବୋହୂକୁ ବର୍ତ୍ତମାନ ପଠାଇପାରିବେ ନାହିଁ ବୋଲି ସିଧାସଳଖ ମନା କରିଦେଲେ । ଅନୁକଂପାର ବାପା ନିଜକୁ ଦୋଷୀ ବୋଲି ସ୍ୱୀକାର କରିବା ପରେ ଏଇ ବିଚାରର ଆଉ ପ୍ରତିବାଦ କରିବାର ସାହସ ମଧ୍ୟ କଲେ ନାହିଁ । ତେଣୁ ସେ ଫେରିଗଲେ ।

ଏତିକିରେ ଶ୍ରୀଧର ଶାନ୍ତି ପାଇ ପାରିଲେନି । ସୁନା ଗହଣା ଓ ବମ୍ବେଇ ପାର୍ଟନ୍ ଖଟ କଥା ଚିନ୍ତା କଲାବେଳେ ତାଙ୍କର କୋହ ଉଠୁଥିଲା ଓ ଏଥିରୁ ନିବୃତ୍ତ ହେବା ଲାଗି ସେ ବିଭିନ୍ନ ଉପାୟନମାନ ଗ୍ରହଣ କରୁଥିଲେ । ମୁକ୍ତିକାନ୍ତ ସହରକୁ ଯିବା ପରେ ଛୁଟିଦିନ ବ୍ୟତୀତ ଅନ୍ୟଦିନ ଘରକୁ ଆସିବା ପ୍ରାୟତଃ ସମ୍ଭବ ହେଉ ନ ଥିଲା । ଏକଥା ଶ୍ରୀଧରଙ୍କୁ ଭଲ ଭାବେ ଜଣାଥିଲା । ତେଣୁ ବିଭିନ୍ନ ଆଳ ଦେଖାଇସେଇ ଦିନମାନଙ୍କରେ ଶ୍ରୀଧର ନିଜର ବୋହୂ ସଂଗେ ଝଗଡ଼ା କରୁଥିଲେ । ଏହି ଝଗଡ଼ାକୁ ଆଳ କରି ଶ୍ରୀଧର ତାଙ୍କର ସମୁଦିଙ୍କୁ ନାନା ଅକଥ୍ୟ ଭାଷାରେ ଗାଳି ଦେଉଥିଲେ ଯାହା ସହ୍ୟ କରିବା ଅନୁକଂପା ପକ୍ଷରେ ଅସମ୍ଭବ ଥିଲା । ତେଣୁ ସେ ତାର ଶ୍ୱଶୁରଙ୍କୁ କାଳକ୍ରମେ ମୁହେଁ ମୁହେଁ ଜବାବ ଦେବାକୁ ପଛେଇଲାନି । ତାର ଏଇ ଆଚରଣରେ ଶାଶୁ ସୁଲୋଚନା ମଧ୍ୟ ପ୍ରତି ଆକ୍ରମଣ କରିବାକୁ ପଛାଉ ନ ଥିଲେ ।

ଏହିପରି ପରିବାରରେ ସବୁବେଳେ ଅଶାନ୍ତି ଲାଗୁ ରହୁଥିଲା ଓ ଖଟ ନ ଆଣିବା ପର୍ଯ୍ୟନ୍ତ ଅନୁକଂପାକୁ ତଳେ ଶୋଇବା ଲାଗି ତାର ଶାଶୁ ଓ ଶ୍ୱଶୁର ନିର୍ଦ୍ଦେଶ ଜାରି କରୁଥିଲେ ।

କ୍ରମଶଃ ଅଶାନ୍ତିର ନିଆଁ ସମସ୍ତଙ୍କ ମନକୁ ଦଗ୍ଧ କଲା ଓଅନୁକମ୍ପା କାଳେ ତାର ସ୍ୱାମୀକୁ ପ୍ରଭାବିତ କରି ସେମାନଙ୍କଉପରେ ପ୍ରତିଶୋଧ ନେବାକୁ ପଛେଇବନି ଏଇ ଆଶଙ୍କାରେ

ଶ୍ରୀଧର ଓ ସୁଲୋଚନା ତାକୁ ଚିରଦିନ ପାଇଁ ଶେଷ କରିଦେବାର ନିଷ୍ପତ୍ତି ନେଲେ ଓ ତାହା ହିଁ କାର୍ଯ୍ୟକାରୀ କରାଗଲା । ଏହାଛଡ଼ା ସେମାନଙ୍କର ଅନ୍ୟୋପାୟ ନ ଥିଲା ବୋଲି ଶ୍ରୀଧର ଓ ସୁଲୋଚନା ଦୃଢ଼ ଭାବେ ଦାବି କଲେ ।

ହରପ୍ରସାଦ ସେମାନଙ୍କ ଯୁକ୍ତିରେ ଆଦୌ ବିଚଳିତ ହେଲେ ନାହିଁ । ବରଂ ଧୀରେ ଧୀରେ ମୀନାକ୍ଷୀ ଆଡ଼କୁ ଅଗ୍ରସର ହେଲେ । ସେତେବେଳେ ମୀନାକ୍ଷୀ ତଳକୁ ମୁହଁ ପୋତି ଭୂମିରେ ଗାର ଟାଣୁଥିଲା ଓ ଅବସାଦ ତାର ମୁହଁକୁ ଅସମ୍ଭବ ଭାବେ ଗ୍ରାସ କରିଥିଲା । ଏଇ ପରିସ୍ଥିତି ଯୋଗୁଁ ସେ ଭାଙ୍ଗି ପଡ଼ିଥିବାର ହରପ୍ରସାଦ ଅନୁମାନ କଲେ । ତାର ଗୋରା ତକ ତକ ମୁହଁଟି କଳା ପଡ଼ିଯିବା ସଂଗେ ସଂଗେ ଏ ପ୍ରକାର ଉଦ୍‌ବିଗ୍ନତା ସେଠାରେ ଉକୁଟି ଯାଇଥିଲା । ହରପ୍ରସାଦ ମୀନାକ୍ଷୀ ଆଡ଼େ ପ୍ରଶ୍ନିଳ ଆଖିରେ ଚାହିଁଲେ । ମୀନାକ୍ଷୀ ମଧ୍ୟ ଉତ୍ତର ଦେବାକୁ ଆଦୌ କୁଣ୍ଠିତ ନ ଥିଲେ ।

ତାର ବୟାନ ଦେବାକୁ ଯାଇ ମୀନାକ୍ଷୀ ଦାବି କରି ବସିଲା ଯେ, ଅନୁକଂପାର ଆଗମନରେ ସେ ପରିବାରର ସମସ୍ତଙ୍କ ଅପେକ୍ଷା ବେଶି ଖୁସି ଥିଲା । ମାତ୍ର ଏଇ ଖୁସିକୁ ଦୂଷିତ କରିବାରେ ଅନୁକମ୍ପା ହିଁ ଦାୟୀ ରହିବ ସବୁଦିନ ଲାଗି ।

ମୀନାକ୍ଷୀକଲେଜରେ ପଢ଼ିବା ସମୟରେ ଅନୁକଂପା ତାଙ୍କ ଘରକୁ ବୋହୂ ହୋଇ ଆସିଥିଲା । ଯଦିଓ ପରିବାରରେ ଅନୁକଂପା ଆଣି ନ ଥିବା ଯୌତୁକଗୁଡ଼ିକ ପାଇଁ ବରାବର କଳି ଲାଗି ରହୁଥିଲା, ତେବେ ସେ ଘଟଣା ନେଇ ମୀନାକ୍ଷୀ ଆଦୌ ମୁଣ୍ଡଖେଳାଉ ନ ଥିଲା । ତାର ବାପା ଓ ମାଆ, ବୋହୂ ନ ଆଣିଥିବା ଦାବିଗୁଡ଼ିକ ଉପରେ ବାରମ୍ବାର ପ୍ରଶ୍ନ ଉଠାଉଥିଲେ ଓ ଏହା ନ ଆଣିଲେ ସେମାନେ ମୀନାକ୍ଷୀକୁ ବିବାହ ଦେବା ପ୍ରାୟତଃ ଅସମ୍ଭବ ହୋଇପଡ଼ିବ ବୋଲି ନଜିର୍ ଦେଉଥିଲେ । ମାତ୍ର ଏଇ ଘଟଣାକୁ ସଂପୃକ୍ତ କରି ମୀନାକ୍ଷୀର ଭବିଷ୍ୟତର ସୌଧ ନିର୍ମାଣ କରୁଥିଲେ ଓ ତାହା ମୀନାକ୍ଷୀକୁ ଖୁବ୍ ବେଶି ବିଚଳିତ କରୁଥିଲା, ଯାହା ଥିଲା ପ୍ରାୟତଃ ଅନାବଶ୍ୟକ । ଏତିକିବେଳେ ମୀନାକ୍ଷୀର ଶୁଭକାନ୍ତ ସହ ପ୍ରେମ ହେଲା ।

ଶୁଭକାନ୍ତ ମୁକ୍ତିକାନ୍ତର ଜଣେ ସଚ୍ଚୋଟ ବନ୍ଧୁ ଥିଲା ଓ ଅନେକ ସମୟରେ ସେମାନେ ପରସ୍ପର ଘରକୁ ଯାଇ ଆତିଥ୍ୟ ଗ୍ରହଣ କରୁଥିଲେ । ଘଟଣାକ୍ରମେ ଶୁଭକାନ୍ତ ପ୍ରତି ମୀନାକ୍ଷୀର ଦୁର୍ବଳତା ଜନ୍ମିଲା ଓସେମାନେ ପରସ୍ପରକୁ ପାଇବା ଲାଗି ନିଷ୍ପତ୍ତି ନେଲେ । ତେଣୁ ବେଳେବେଳେ ଶୁଭକାନ୍ତ, ମୁକ୍ତିକାନ୍ତକୁ ଦେଖା କରିବା ଆଳରେ ତାଙ୍କ ଘରକୁ ଆସୁଥିଲା ଓ ସେମାନେ ଟେପ୍ ପ୍ଲେୟାର୍‌ରୁ ବଛା ବଛା ହିନ୍ଦୀ ଗୀତ ଶୁଣିବାରେ ଆଗ୍ରହ ପ୍ରକଟ କରୁଥିଲେ ।

ଏଇଭଳି କିଛି ଦିନ ଯିବା ପରେ ସେମାନେ ଆହୁରି ପାଦେ ଆଗେଇଗଲେ ଓ ପରିସ୍ଥିତିକୁ ସମ୍ଭାଳିନେବା ପାଇଁ ମୀନାକ୍ଷୀର କଲେଜ ଯାଇ ଶୁଭକାନ୍ତ ତା ସହ ପରାମର୍ଶ କରୁଥିଲେ ଓ ଘଟଣାଟିକୁ ଚପାଇଦେବା ଲାଗି ଡାକ୍ତରୀ ଔଷଧର ସାହାଯ୍ୟ ନେବାରେ ମୀନାକ୍ଷୀରକୌଣସି ଆପତ୍ତି ମଧ୍ୟ ନ ଥିଲା ।

ଘଟଣା ବାହାରେ ପ୍ରକଟ ନ ପାଇଲେ ବି ସେମାନଙ୍କର ଭଲ ପାଇବା ଦେହାତୀତରୁ ଦେହକୁ ଅବତରଣ କରିସାରିଛି ବୋଲି ଅନୁକଂପା ଜାଣି ପାରିଥିଲା ଓ ଏ ପ୍ରକାର କାର୍ଯ୍ୟରୁ ନିବୃତ୍ତ ହେବାକୁ ସେ ମୀନାକ୍ଷୀକୁ ବାରମ୍ବାର ଉପଦେଶ ଦେଉଥିଲା । ମାତ୍ର ଏ ଉପଦେଶ ସବୁ ମୀନାକ୍ଷୀ ପ୍ରତି ଥିଲା ଅର୍ଥହୀନ, ପ୍ରକାରାନ୍ତରେ ମୀନାକ୍ଷୀ ନିଶ୍ଚୟ ହେଲା ଯେ, ଅନୁକଂପା ତାକୁ ସହ୍ୟ କରିପାରୁ ନାହିଁ । କାରଣ ତାଙ୍କ ପରିବାର ଅପେକ୍ଷା ଶୁଭକାନ୍ତର ପରିବାର ସବୁ ଦିଗରେ ଅଧିକ ଶକ୍ତିଶାଳୀ ଥିଲା ଓ ଏହା ହିଁ ତାର ଈର୍ଷାର କାରଣ ବୋଲି ମୀନାକ୍ଷୀ ଅଭିଯୋଗ କଲା ।

ମାତ୍ର ଏଥିରେ ଡରିଯିବାର ଝିଅ ନ ଥିଲା ଅନୁକଂପା ବରଂ ଶୁଭକାନ୍ତକୁ ସେ ଏଣିକି ତାଙ୍କ ଘରକୁ ଆସିବା ଲାଗି ନିଷେଧ କରିବ ବୋଲି କହିଲା । ଏଥିରେ ବାଘୁଣୀ ଭଳି ଚିହିଁକି ଉଠିଲା ମୀନାକ୍ଷୀ । ଦୁହିଁଙ୍କର ଭୀଷଣ କଳି ହେଲା । ମୃତ୍ୟୁର ପୂର୍ବ ସପ୍ତାହରେ ଅନୁକଂପା ତାର ଶେଷ ଅସ୍ତ୍ର ପ୍ରୟୋଗ କଲା ଓ ଏ ସବୁ ଘଟଣା ମୁକ୍ତିକାନ୍ତ ଆଗରେ ଖୋଲିଦବ ବୋଲି ଧମକ ଦେଲା । ଏହା ଶୁଣି ପ୍ରକୃତରେ ମୀନାକ୍ଷୀ ଖୁବ୍ ଡରିଯାଇଥିଲା । ତେଣୁ ଏପରି ଭୁଲ୍ କେବେ ଆଉ କରିବନି ବୋଲି ପ୍ରତିଜ୍ଞା କଲା । ମାତ୍ର ପ୍ରକୃତରେ ତାହା କଣ ସମ୍ଭବ ? ନଦୀ କେବେ ସମୁଦ୍ରର ବିପରୀତ ଦିଗରେ ବହିପାରେ ? ତେଣୁ ଶୁଭକାନ୍ତର ପରାମର୍ଶରେ ଅନୁକଂପାକୁ ବିଷ ଦେବା ଛଡ଼ା ସେ ଆଉ କଣ ବା କରି ପାରିଥାନ୍ତା ? ନିଜର ଦାବିକୁ ଦୃଢ଼ କରିବା ଲାଗି ମୀନାକ୍ଷୀ କହିଲା ଯେ, ଏଇ ନିଷ୍ପତ୍ତି ପାଇଁ ଶୁଭକାନ୍ତର ପରାମର୍ଶକୁ ସେ ଅପେକ୍ଷା କରିଥିଲେ ହେଁ ଆଗରୁ ସେ ଏ ସମ୍ପର୍କରେ ନାନା ଚିନ୍ତା କରିଥିଲା ଓ ଏହା ଫଳପ୍ରଦ ହେଲେ ସେମାନଙ୍କର କୌଣସି ଅସୁବିଧା ରହିବ ନାହିଁ ବୋଲି ସେ ଜାଣିଥିଲା । ମାତ୍ର ମୀନାକ୍ଷୀ ଅନୁଭବ କଲା, ଯେତେବେଳେ ମଣିଷ ଅନ୍ୟର କୌଣସି ପ୍ରସ୍ତାବକୁ ଆଡ଼ ଆଖିରେ ଚାହେଁ ନାହିଁ, ସେତେବେଳେ ସେ ନିଜ ସହ ଚରମ ପ୍ରତାରଣାରେ ଲିପ୍ତ ରହିଥାଏ । ତାହା ହିଁ ଘଟିଛି ତା ଜୀବନରେ ଓ ସେଥିଯୋଗୁଁ ସେ ନିଜକୁ ଦୋଷୀ କରିବାକୁ ଲାଗିଲା ।

ହରପ୍ରସାଦ ମୀନାକ୍ଷୀର ସ୍ୱୀକାରୋକ୍ତିଶୁଣିବା ପରେ କିଛି ସମୟ ଆକାଶକୁ ଚାହିଁଲେ ଓ ଦୀର୍ଘ ନିଶ୍ୱାସ ଛାଡ଼ିଲେ । ତା ପରେ ମୀନାକ୍ଷୀକୁ ଚାହିଁଲେ ମାତ୍ର ଅନୁଭବ କଲେ,

ସେଠାରେ ମୀନାକ୍ଷୀ ବଦଳରେ ତାଙ୍କର ନିଜ ଝିଅ ମଧୁମିତା ତଳକୁ ମୁହଁ ପୋତି ଠିଆ ହୋଇଛି । ତାଙ୍କର ହଠାତ୍ କୋହ ଆସିଲା ଓ ଏହା ପ୍ରକାଶ ନ କରିବା ଲାଗି ସେ ଟିକିଏ ସଚେତନ ହେଇଗଲେ । ଏତିକିବେଳେ ବାହାରୁ ଦୌଡ଼ି ଦୌଡ଼ି ଆସି ଗୋଟିଏ ପିଲା ତାଙ୍କ ପାଖରେ ଠିଆ ହେଇଗଲା । ହରପ୍ରସାଦ ଦୃଷ୍ଟି ଫେରାଇ ଚାହିଁଲେ ଓ ଦେଖିଲେ, ଏଇ ଘର ଭିତରକୁ ଆସିବା ଲାଗି ସେଇ ପିଲାଟିର ସାହାଯ୍ୟ ସେ ନେଇଥିଲେ ଓ ଏଥର କୃତଜ୍ଞତା ଦେଖାଇ ସାମାନ୍ୟ ହସିଲେ । ପିଲାଟିତାଙ୍କ ହସର ପ୍ରତ୍ୟୁତ୍ତର ଦେବାକୁ ଯାଇ ସାମାନ୍ୟ ହସିଲା ଓ ମୁଦା ହେଇଥିବା କାଗଜଟେ ତାଙ୍କ ହାତକୁ ବଢ଼େଇ ଦେଇ ଦୌଡ଼ି ଚାଲିଗଲା । କେଜାଣି କାହିଁକ କାଗଜଟି ଖୋଲୁ ଖୋଲ ହରପ୍ରସାଦଙ୍କର ମନେହେଲା ସେଇ ପିଲାଟି ମୂକ । କାରଣ ପିଲାଟିକୁ ଆସିବା ସମୟରୁ ସେ ଯେତେସବୁ ପ୍ରଶ୍ନ କରିଥିଲେ, ପିଲାଟି କେବଳ ଠାରରେ ହିଁ ଉତ୍ତର ଦେଇଥିଲା ।

ହରପ୍ରସାଦ ଚିଠିଟି ପଢ଼ିଲେ । ତାଙ୍କ ସାମ୍ନାରେ ମୁକ୍ତିକାନ୍ତ, ଶ୍ରୀଧର, ସୁଲୋଚନା ଓ ମୀନାକ୍ଷୀ ଗୋଟେ ଗୋଟେ ଗଛ ଭଳି ଠିଆ ହେଇଥିଲେ । ଚିଠିଟିରେ କାହାରିକୁ ସଂବୋଧନ କରା ଯାଇ ନ ଥିଲେ ମଧ୍ୟ ତଳେ ଅନୁକଂପାର ସ୍ୱାକ୍ଷର ପଡ଼ି ହେଉଥିଲା । ହରପ୍ରସାଦ ଚିଠିଟିକୁ ପୁନର୍ବାର ସମସ୍ତଙ୍କୁ ଶୁଣାଇଲା ଭଳି ପଢ଼ିଲେ:

ଜୀବନକାଳରେ ସ୍ୱାମୀଙ୍କଠାରୁ ପାଇଥିବା ପ୍ରେମ, ଶାଶୁ, ଶ୍ୱଶୁରଙ୍କ ସ୍ନେହ ଓ ନଣନ୍ଦର ସଖ୍ୟ କେବେ ଭୁଲି ପାରିବିନି । ମୋର ଆତ୍ମହତ୍ୟା ପାଇଁ ଏମାନେ କେହି ଦାୟୀ ନୁହନ୍ତି ବରଂ ନିଜ ଇଚ୍ଛାରେ ମୁଁ ଏହା କରି ବସିଛି । ଶାନ୍ତି ଖୋଜିବାକୁ ଯାଇ ଏହା କରିବା ଛଡ଼ା ମୋର ଅନ୍ୟ କିଛି ଉପାୟ ନ ଥିଲା ।

(ଇତି)

ଅନୁକଂପା"

ପଢୁ ପଢୁ ହରପ୍ରସାଦଚିଠିଟିକୁ ପକେଟରେ ରଖିଲେ ଓ ତାଙ୍କର ଆଖି ଛଳ ଛଳ ହେଇଗଲା । ସେଇ ଲୁହ ଭିଜା ଆଖିରେ ସମସ୍ତଙ୍କୁ ଲକ୍ଷ୍ୟ କଲେ ଓ ମୀନାକ୍ଷୀକୁ ଚାହିଁବା ମାତ୍ରେ ତାଙ୍କର ଝିଅ ମଧୁମିତା କଥା ଖୁବ୍ ବେଶି ମନେପଡ଼ିଲା ଓ ମନେ ହେଲା ଅନୁକମ୍ପାର ପ୍ରକୃତ ହତ୍ୟାକାରୀ ହେଉଛନ୍ତି ସେ ନିଜେ ।

ନିଜକୁ ଅସମ୍ଭବ ଭାବେ ସେ ଦୋଷୀବୋଲି ଅନୁଭବ କଲେ ଓ ଏଥିରୁ ଆଉ ମୁକ୍ତି ନାହିଁ ବୋଲି ତାଙ୍କର ମନେ ହେଲା ।

ସେତେବେଳକୁ ସୂର୍ଯ୍ୟ ମୁଣ୍ଡ ଉପରୁ ଖସି ସାରିଥିଲେ ଓ ତାଙ୍କର ସକାଳର ସେଇ ଦୁଃଖାନ୍ତ ଦୃଶ୍ୟଟି ମନେପଡ଼ିଲା ଓ ଆହୁରି ମନେପଡ଼ିଲା ବିଛେଇ ହେଇ ପଡ଼ି ରହିଥିବା ଫୁଲଦାନୀର ପ୍ରତ୍ୟେକ ଟୁକୁଡ଼ାରେ ମଧୁମିତାର ମଉଳି ପଡ଼ିଥିବା ଭାସମାନ ମୁହଁଟି ।

ନିରବରେ ବାହାରକୁ ଚାଲି ଆସି ହରପ୍ରସାଦ ଗାଡ଼ିରେ ଷ୍ଟାର୍ଟ ଦେଲେ ଓ ପଛକୁ ଆଦୌ ଚାହିଁଲେ ନାହିଁ ।

# ମ୍ଲେଚ୍ଛ ସଂହାର

କଂପାନୀ ଚାକିରୀରେ ଅବସର ଓ ବିନୋଦନ ଦୁଇଟା ଯାକ ମିଳିବା ଖୁବ୍ କଷ୍ଟକର ବ୍ୟାପାର । ତେବେ କେଜାଣି କାହିଁକି ସେଦିନ ମୁଁ ସ୍ଥିର କରିନେଲି - ନା, ଆଜି ଅଫିସ୍ ଯିବା ବନ୍ଦ । ଯେତେ କାମ ଥାଉ ପଛକେ । ସେଦିନ ବି ଥିଲା ରବିବାର ତେଣୁ ଶୋଇବାଟାକୁ ପ୍ରଥମେ ଉପଭୋଗ କରାଯାଉ ।

କିଛି ସମୟ ପରେ କବାଟରେ ଠକ୍ ଠକ୍ ଆବାଜ୍ । କବାଟ ଖୋଲି ଦେଖିଲି ଜୀବନ । ମୋର ବନ୍ଧୁ, ଭଲ ଗୀତ ଗାଏ । କ୍ରିକେଟ ବି ଖେଳେ ଏବଂ ବିଶେଷ ପରିଚୟ ହେଲା ମୋର ଅନ୍ୟ ବନ୍ଧୁଙ୍କ ଭିତରେ ପ୍ରେମ କରିବାରେ ଯେ ଓସ୍ତାଦ୍ । ଆଖି ପିଛୁଳାକେ ଝିଅମାନଙ୍କୁ ଫସେଇ ଦେଇପାରେ । ରବିବାର ଦିନ ସକାଳୁ ସକାଳୁ ଚାଲି ଆସିଛି ବଜାରରୁ ପରିବା ଆଉ ମାଂସ ନେବା ଲାଗି ବୋଧହୁଏ, ମୋର ଅଳସ ଆଉ ନିସ୍ତେଜତାକୁ ବେଖାତିର କରି ଏଥର ଜୀବନ ଗୋଟେ ପ୍ରସ୍ତାବ ବାଢିଲା : କିବେ ଶଳା ମ୍ଲେଚ୍ଛ ଶୋଇଥା ।

: ଆଉ କଣ କରିବି ରବିବାରଟାରେ ?

ଚାକିରୀ ଜୀବନରେ ଫାଇଲ ପତ୍ରର ଯନ୍ତା ଭିତରେ ମଣିଷ ମୂଷା ଭଳି ଛଟପଟ ହେବାରେ ଏମିତି ଅଭ୍ୟସ୍ତ ହେଇଗଲାଣି ଯେ - ଟିକେ ଅବସର ମିଳିଲେ ତାକୁ କିପରି ଉପଭୋଗ କରିହେବ ସେ ସମ୍ପର୍କରେ କୌଣସି ଯୋଜନା କରିବା ପ୍ରାୟତଃ ମୁସ୍କିଲ୍ ହେଇଯାଉଛି ।

: ଚାଲ୍ ଗୋଟେ ନୂଆ ଜାଗାକୁ ଯିବା । ଖୁବ୍ ଭଲ ଯାଗା ।" ଜୀବନ ପ୍ରସ୍ତାବ ଦେଲା ଓ ମୁଁ ଅଗତ୍ୟା ରାଜି ହୋଇଗଲି । ସେଇଠୁ ହଠାତ୍ ସକାଳର ନିତ୍ୟକର୍ମ ସାରି ଦିଜଣ

ଯାକ ଚାଲିଲୁ ଚିନ୍ମୟ ଘରକୁ । ଜୀବନର ଅଫିସ୍‌ରେ ଚିନ୍ମୟ ବି କାମ କରେ । ଆଦିବାସୀ ମାନଙ୍କର ଉନ୍ନତି ପାଇଁ ନୂତନ ଖସଡ଼ା ପ୍ରସ୍ତୁତ କରେ ।

ସେମାନଙ୍କର ସଂସ୍କୃତି ସହ ନିଜକୁ ସାମିଲ୍ କରି ନିଖୋଜ୍ ହେଇଯିବାକୁ ଚାହେଁ ସେ । ସେ ବି ପ୍ରେମ କରେ । କିନ୍ତୁ ଟିକେ ଡ଼େରିରେ ଆରମ୍ଭ କଲା ଧନ୍ଦାଟା । ତେଣୁ ସେ ଟୋକିଟା ତା ସାଙ୍ଗେ ମୂଲଚାଲ କରୁଛି । ଏବେ ମାସେ ଛୁଟି ନେଇ ଚିନ୍ମୟ କଣ ଗୋଟେ ପରୀକ୍ଷା ପାଇଁ ପ୍ରସ୍ତୁତ ହେଉଛି ।

ଜୀବନ ଆଉ ମୁଁ ଯେତେବେଳେ ରବିବାରର ନୂତନ ଖସଡ଼ା ଚିନ୍ମୟ ସାମ୍ନାରେ ପେଶ୍ କଲୁ, ସେ ଟିକେ ଅରାଜି ହେଲା । ମାତ୍ର ଆମର ବାଧ୍ୟ ବାଧକତା ଯୋଗୁ ଶେଷର ରାଜି ହେବା ଛଡ଼ା ତାର ଆଉ କୌଣସି ଉପାୟ ନଥିଲା ।

ଚିନ୍ମୟର ଘରୁ ଯେତେବେଳେ ତିନିବନ୍ଧୁ ସ୍କୁଟରରେ ବାହାରି ଖଣ୍ଡେ ଦୂର ଚାଲିଯିବା ପରେ ଯେଉଁ ଝିଅଟି ଆମକୁ ଦେଖି ମାପିଚୁପି ନମସ୍କାର କଲା ଓ ହସିଲା, ସେ ହିଁ ଥିଲା ଚିନ୍ମୟର ପ୍ରେମିକା । ସେଇଠୁ ମୁଁ ବୁଝିଗଲି କାହିଁକି ଏତେବେଳଯାଏ ଆମ ସାଙ୍ଗରେ ନଆସିବାକୁ ଚିନ୍ମୟ ଜିଦ୍ ଧରିଥିଲା । ପଢାପଢିର ଆଳରେ ସେ ସୁଜାତା ସହ ଗପ କରିବାକୁ ଚାହୁଁଥିଲା । ଯଦିଓ ମୁଁ ବାଜି ମାରି କହିପାରେ ସେ ସବୁ ଗପର ବିଷୟ ବସ୍ତୁ ହିଁ କିଛି ନଥିବ । ତେବେ ଜୀବନ ଟିକେ ଚିଡ଼େଇବା ଲାଗି ଚେଷ୍ଟା କଲା ଓ ଚିନ୍ମୟ ନିଜକୁ ଯଥା ସଂଭବ ସ୍ୱାଭାବିକ ରଖିବାକୁ ଯିମିତି ବଦ୍ଧପରିକର ଥିଲା ।

ଅଗତ୍ୟା ବାଇଶି କିଲୋମିଟର ପିଚୁରାସ୍ତା ପରେ ଆମେ ବୈପାରିଗୁଡ଼ାରେ ପହଞ୍ଚିଲୁ । ସେଇଠୁ ପ୍ରାୟ ପାଞ୍ଚ କିଲୋମିଟର ଦୂର ମାଟି ରାସ୍ତାରେ ଜଙ୍ଗଲ ଭିତରେ ଗଲେ ବୀରଖମ୍ବ ପଡ଼େ । ଆମେ ସେଠି ପହଞ୍ଚିଲା ବେଳକୁ ସୂର୍ଯ୍ୟ ମୁଣ୍ଡ ଉପରକୁ ଉଠି ସାରିଥିଲେ ।

ବୀରଖମ୍ବଙ୍କ ମାହାତ୍ମ୍ୟ ସଂପର୍କରେ ମୁଁ ପ୍ରଥମେ ହିଁ ଆଜି ସକାଳେ ଶୁଣିଥିଲି ଜୀବନଠୁ ।

ଜୀବନ ଏ ଖବର ସଂଗ୍ରହ କରିଥିଲା କୌଣସି ଏକ ପାନ ଦୋକାନରୁ । ସହରର ସମସ୍ତ କୋଳାହଳଠୁ ଅନେକ ଦୂରରେ ଗୋଟେ ସାତ୍ତ୍ୱିକ ପରିବେଶ ଭିତରେ ନିଜକୁ ହଜାଇ ଦେବାରେ ଆମେ ଆଜି ପ୍ରତିଜ୍ଞାଶ୍ରିତ ।

ବୀରଖମ୍ବଙ୍କ ଠାରୁ କିଛି ଦୂରରେ ଯୋଉଠୁ ଆଉ ସ୍କୁଟର ଚଳାଇନେବା ସମ୍ଭବ ହେଲା ନାହିଁ, ସେଇଠୁ ଆମର ଗାଇଡ୍ ହେଲା ହାଡୁ ଦଳେଇ । ଉତ୍ତର ଷାଠିଏର ହାଡୁ ଦଳେଇ ନିକଟସ୍ଥ ଗାଁ କେଳୁପଡ଼ାରୁ ଆସିଥିଲା ଜଙ୍ଗଲରୁ କାଠ କାଟି ନେବାକୁ । ବିକ୍ରି ପାଇଁ

ନୁହେଁ ଘର ଜାଳେଣି ପାଇଁ । ବୋହୂ ପଠେଇଛି । ଶିଆଳୀ ଲଟାର ଘଞ୍ଚ ବେଷ୍ଟନୀ ଭିତରେ ବୀରଖମ୍ବ ବିରାଜିତ । ରୂପ ବର୍ଣ୍ଣନା କରିବା ଏକାନ୍ତ ଦୁଃସାଧ୍ୟ । ଗୋଟେ ପଥର ଖମ୍ବ । ସାମ୍ନା ଚଟାଣ କିଛିଟା ମସୃଣ ଓ ଖସଡ଼ା । ବେଶ୍ ଥଣ୍ଡା । ସୂର୍ଯ୍ୟ କିରଣ ପଡ଼ିବାର କୌଣସି ସୁଯୋଗ ନାହିଁ ।

ସାଂବାଦିକର ସ୍ୱାଭାବରେ ଏଥର ଚିନ୍ମୟ ଆରମ୍ଭ କରିଦେଲା ହାଡୁ ଦଳେଇ ସହ ଆତ୍ମୀୟତା । ଜାତିରେ ସେ ହରିଜନ । ଆଣ୍ଠୁ ଲୁଚୁ ନଥିବା ଖଣ୍ଡେ ଲୁଗାକୁ କଛାମାରି ପିନ୍ଧିଛି । ତାର ହାଡ଼ ଆଉ ଚମ ଦେଖିଲେ ଅନୁମାନ କରିହେବ ଯୁଆନ୍ ବେଳେ ହାଡୁ ଦଳେଇର ଚେହେରା କେତେ ନିଦା ଥିଲା । ପିଟିଲା ଭଳି ଚେହେରା । କଳରେ ଧୂଆଁ ପତର ଜାକିଛି ସେ । ମଝିରେ ମଝିରେ କଥା କହିଲା ବେଳେ ପଛ ଆଡ଼କୁ ଛେପ ପକାଉଛି ।

ଚିନ୍ମୟ ତା ପଛରେ ଜୋକ ପରି ପଡ଼ିଯାଇଛି । ଜୀବନ ବୀରଖମ୍ବଙ୍କୁ ଚାହିଁ ତାର ଅର୍ଜି ପେଶ୍ କରୁଛି । ମୁଁ ଜାଣେ ଜୀବନ କଣ ପାଇଁ ଏତେ ବାଟ ଦୌଡ଼ି ଆସିଛି ।

ଚିନ୍ମୟ ଆଉ ହାଡୁଦଳେଇର କଥୋପକଥନରୁ କିଛି ଶୁଣି ମୋର ମନେହେଲା ନିଜର ମାହାତ୍ମ୍ୟ ଓ ପରାକାଷ୍ଠା ପ୍ରଚାରିତ କରିବାକୁ ସ୍ୱୟଂ ବୀରଖମ୍ବ ଯିମିତି ହାଡୁ ଦଳେଇକୁ ନିଜର ଆମ୍ବାସାଡ଼ର କରି ପଠେଇଛନ୍ତି । ଜଙ୍ଗଲର ଗହଳ ପତ୍ରର ଫାଙ୍କ ଭିତରୁ ମୁଁ ବେଳେବେଳେ ଆକାଶର ଭାସମାନ ମେଘଖଣ୍ଡ ଏବଂ ପରେ ପରେ ହାଡୁ ଦଳେଇର ସ୍ୱୟଂ ଚାଳିତ ଅଧରକୁ ଚାହିଁଥିଲି ।

: ତମର କେତୋଟି ପିଲାପିଲି ?" କଥା ମଝିରେ ଜୀବନର ଏଇଟା ଥିଲା ପ୍ରଶ୍ନ ।

: ଛଅ ଝୁଅ, ଗୁଟେ ପୁଅ । ସବୁ ବୀରଖମ୍ବ ମହାପ୍ରଭୁଙ୍କ ଦୟା ।"

ଜୀବନ ଏଥର ବୀରଖମ୍ବଙ୍କ ଉଦ୍ଦେଶ୍ୟରେ ହାତ ଯୋଡୁ ଯୋଡୁ ଆଖି ବନ୍ଦ କରି ଦେଲା । ହାଡୁ ଦଳେଇ ଗପି ଚାଲିଛି । ନିଜ ଜୀବନାନୁଭୂତିର ଅବିସ୍ମୃତ ଆଲେଖ୍ୟ । ପ୍ରଥମ ସନ୍ତାନ ଜନ୍ମକାଳର ଘଟଣା । ସ୍ତ୍ରୀ ତାର ବହୁତ ଯନ୍ତ୍ରଣା ପାଉଥାଏ । ବୀରଖମ୍ବଙ୍କ ମହୁରିଆ ଭାବରେ ନୁହେଁ ଜଣେ ଆତଙ୍କିତ ପ୍ରାର୍ଥୀ ଭାବେ ସେଦିନ ହାଡୁ ଦଳେଇ ଆସିଥିଲା । ପୂଜାରୀକୁ ତାର ଗୁହାରି ଶୁଣାଇବା ପରେ ଠାକୁରଙ୍କୁ ଗୋଟେ ପାରା ଦବ ବୋଲି ପ୍ରତିଜ୍ଞା କଲା । ପୂଜାରୀଠୁ କିଛି ଚେରମୂଳ ନେଇ ଘରକୁ ଯାଇ ପହଞ୍ଚିଲା ବେଳକୁ କଅଁଳା ପିଲାଟାଏ ରାହା ଧରିଛି ।

ତାର କଥା ସବୁକୁ ନିଛକ ଓଡ଼ିଆରେ ଅନୁବାଦ କରି ମତେ ମଝିରେ ମଝିରେ ବୁଝାଇ ଦେଉଥିଲା ଚିନ୍ମୟ । ବୁଝିବା ଭଳି ମୁଁ ବି ତା କଥାରେ ବେଳେବେଳେ ମୁଣ୍ଡ ଟୁଙ୍ଗାରୁ

ଥାଏ । ବୀରଖମ୍ଭଙ୍କ କୃପାରୁ ତାର ସବୁ ଠିକ୍ ହେଉଥିଲା । ସେ ବି ଯାଚିବା ମୁତାବକ ତାର ପାରା ଆଣି ଦେଇ ଯାଉଥିଲା । ହେଲେ ସବୁଦିନ ସମାନ ନଥିଲା । ଏକଦା ତା ସ୍ତ୍ରୀର ସପ୍ତମ ଗର୍ଭରୁ ଜାତ ଏକମାତ୍ର ପୁତ୍ର ସନ୍ତାନ ପାଇଁ ବୀରଖମ୍ଭଙ୍କୁ ଛେଳିଟିଏ ଯାଚିଦେଇ ସେ ଭୁଲିଗଲା । ବହୁଦିନ ଯାଏ ସେ କଥା ତାର ମନେ ରହିଲାନି ।

ଅଥଚ ସପ୍ତାହର ପ୍ରାୟ ଅଧିକାଂଶ ଦିନ ହାଡୁଦଳେଇ ଠାକୁରଙ୍କ ପାଖରେ ମହୁରୀ ବଜାଇ ଦର୍ଶକ ଓ ଭକ୍ତମାନଙ୍କୁ ଖୁସ୍ ରଖୁଥିଲା ।

: ତା ପରେ  କଣ ହେଲା ?" ପ୍ରଶ୍ନିଳ ଦୃଷ୍ଟିରେ ଚାହିଁ ରହିଥିଲା ଜୀବନ ।"

: ହବ ଆଉ କଣ ? ଦିନେ ସକାଳୁ ଉଠି ଦେଖେ ତ ମୁଁ କାଲ ହେଇଯାଇଛି । କିଛି ଫଳ ହେଲାନି । ଶେଷରେ ଆସି ଠାକୁରଙ୍କ ପାଖରେ ପଡ଼ିଲି । ପୂଜାରୀକୁ ବୀରଖମ୍ଭ ସପ୍ନେଇଲେ- ମୋ ପାଉଣା ଦେଇ ଦେ ।' ପୂଜାରୀ ଆସି ମତେ ସ୍ମରଣ କରେଇ ଦେଲା । ଶେଷରେ ଶୁକ୍ରବାର ଦେଖି ଠାକୁରଙ୍କୁ ଛେଳିଟାଏ ଆଣିଦେଲି ଓ ପୂଜାରୀଠୁ ଶିଆଳ ପତ୍ରର ରସ ନେଇ କାନରେ ପକେଇଲି ।

: ଶିଆଳୀ ପତ୍ରର ରସରେ କଣ କାନ ଭଲ ହେଇଯାଏ ?

: ମୁଁ ବିତ ସେଇଆ ଭାବିଥିଲା । କିନ୍ତୁ ସେଦିନ ରାତି ପାହିଁ ଆସିଲା ବେଳକୁ ମୋ ନିଦ ଭାଙ୍ଗିଗଲା । ହଠାତ୍ ପକ୍ଷୀଙ୍କର କିଚିରିମିଚିରି ଶୁଣାଗଲା । ଅନୁମାନ କରିନେଲି ଘର ସାମ୍ନାରେ ଶିମୁଳି ଗଛରେ ଥିବା ବଣି ଚଢେଇର ଛୁଆମାନେ ରାବୁଛନ୍ତି ।"

ଇମିତି ଅନେକ କଥା । ସବୁକଥା ଭିତରେ ବୀରଖମ୍ଭଙ୍କର ମହିଁମା ବର୍ଣ୍ଣନା । ମୁଁ ଜାଣିଥିଲି ଠାକୁରଙ୍କ ଉଦ୍ଦେଶ୍ୟରେ ହାତ ଯୋଡ଼ିଲା ବେଳେ ଜୀବନ କହିଥିବ : ପ୍ରଭୁ  ମତେ ରୋମା ମିଳିଯାଉ ।'

ଚିନ୍ମୟ ଶୁଣାଇବ - ଭଗବାନ ମତେ ସୁଜାତାକୁ ଦେଇଦିଅ ।"

ଅଥଚ ମୁଁ କଣ ମାଗିବି ??

ହାଡୁ ଦଳେଇ ଏଥର ତାର ବିପର୍ଯ୍ୟୟର ବିବରଣୀ ଦେବାରେ ଲାଗିଥିଲା । କିମିତି ତାର ଏକମାତ୍ର ପୁଅ ସ୍କୁଲକୁ ନ ଯାଇ ଜୁଆ ଖେଳିଲା । ବାପାକୁ ମାନିଲା ନାହିଁ । କାହାକୁ କିଛି ନ କହି ଘରକୁ ଗୋଟେ ଟୋକୀ ନେଇ ଆସିଲା । ଏବେ ସେ ଟୋକୀର ଦାଉରେ ଛଟପଟ ହେଉଛି ହାଡୁ ଦଳେଇ । ବୁଢାକାଳରେ ସେ ଜଙ୍ଗଲକୁ ପଠାଇଛି କାଠ ଆଣିବା

ପାଇଁ । କାଠ କାଟୁ କାଟୁ ଯଦି ବାଘ ଆସି ଝାମ୍ପମାରେ ତା ହେଲେ ଏ ମାୟା ସଂସାରରୁ ଅନ୍ତତଃ ତାକୁ ତ୍ରାହି ମିଳି ଯାଆନ୍ତା ! ଏଥର ହାଡୁ ଦଳେଇର ଆଖିରେ ଲୁହ ଡବଡବ ।

ଜୀବନର ଆଖିରେ ବି ଲୁହ । କଣ ଇଚ୍ଛା ତମର ପ୍ରଭୁ ? ତମେ ଜାଣିଛ ରୋମାକୁ ମୁଁ କେତେ ଭଲପାଏ । ସିଏ ବିତ ମୋ ବିନା, ଠିକ୍ ପାଣିରୁ ଉଠି ଆସିଥିବା ଗୋଟେ ମାଛ ପରି ।

ଅନେକ କୁମାରୀଙ୍କୁ ଫସେଇଲା ପରେ ଏଥର ନିଜେଇ ଫସିଯାଇଛି ଜୀବନ । ରୋମା ନାମକ କୌଣସି ଏକ ମୋହିନୀର କାଉଁରୀ ସ୍ପର୍ଶରେ ନିଜେଇ ମେଣ୍ଢା ପାଲଟି ଯାଇଛି । ସେଇଥିପାଇଁ ପ୍ରତିଦିନ ସେ ଡାକବାଲାକୁ ଅପେକ୍ଷା କରୁଛି । ଆଲ୍‌ବମ୍‌ର ନିର୍ଦ୍ଧିଷ୍ଟ ପୃଷ୍ଠାମାନଙ୍କୁ ତୋଳି ଧରିଛି ଆଖି ସାମ୍ନାରେ । ନିୟମିତ ଦାଢ଼ି କାଟୁନି ଓ ସର୍ବୋପରି ଏଣିକି ଗଳ୍ପ, ଉପନ୍ୟାସ ବହି ସବୁ ପଢ଼ିବାରେ ମନୋନିବେଶ କରିଛି । ମୋଟାମୋଟି କହିବାକୁ ଗଲେ ସମ୍ୱୟ ହିଁ ହେଇ ଯାଇଛି ତା ପାଇଁ ଗୋଟେ ପ୍ରତାରକ । ସେଇ ପ୍ରତାରଣାରୁ ନିଷ୍କୃତି ପାଇଁ ଆଜି ସେ ବୀରଖମ୍ବଙ୍କ ସାମ୍ନାରେ ହାତ ଯୋଡ଼ି ବାରମ୍ବାର ପ୍ରଣାମ କରୁଛି ।

ହାତ ଯୋଡ଼ି ପ୍ରଣାମ ବି କରୁଛି ଚିନ୍ମୟ । କଣ ମାଗୁଛି ସେ ଏତେ କାକୁସ୍ଥ ହେଇ ? ଚିନ୍ମୟକୁ ଏତେ ବିନୟ, ଅଥବା ଡହଳ ବିକଳ ହେବା କେବେ ମୁଁ ଆଗରୁ ଦେଖିନାହିଁ । କଣ ପାଇଁ ତାର ଏ ଅବସ୍ଥା ?

ହେ ପ୍ରଭୁ ବୀରଖମ୍ବ ! ସୁଜାତାକୁ ତୁମେ ମୋ ପାଖକୁ ଫେରାଇ ଆଣ, ଯିମିତି ହେଲେ । ସାରା ଜୀବନ ମୁଁ ତମ ପାଖେ ଋଣୀ ହେଇ ରହିଯିବି, ଜନ୍ମ ଜନ୍ମାନ୍ତର ପାଇଁ ବି, ଚିନ୍ମୟର ଆଖିରେ ଲୁହର ଲହଡ଼ି ହଠାତ୍ । ଆରେ ଏ କଣ ହେଲା ଚିନ୍ମୟର ?

ଖୁବ୍ ଭଲ ପିଲାଟେ ଥିଲା ସେ । ପ୍ରେମ ନାମକ ଶବ୍ଦ ସହିତ ତାର ଆଦୌ ପ୍ରତ୍ୟକ୍ଷ ସମ୍ପର୍କ ନଥିଲା । ଏପରି ଏକ ଅବସ୍ଥାକୁ ଯିବା ଲାଗି ତାର ହୁଏତ ଆଦୌ ଇଚ୍ଛା ନଥିଲା । ସୁନା ପିଲାଟି ପରି ଘରୁ ଅଫିସ୍, ଅଫିସ୍‌ରୁ ଘର ଆଉ ତା ମଝିରେ ମାଆଙ୍କ ପାଇଁ ଔଷଧ, ବାପାଙ୍କର ସାର୍ଟ ପ୍ୟାଣ୍ଟ କନା, ଭାଇଭଉଣୀଙ୍କର ପଢ଼ାପଢ଼ି ଲାଗି ନାମଲେଖା, ବହିପତ୍ର ସଂଗ୍ରହ ଆଦିରେ ସେ ବ୍ୟସ୍ତ ରହୁଥିଲା । ସବୁ ବ୍ୟସ୍ତତା ଓ ଶିଥିଳତା ଭିତରେ ହଠାତ୍ ଦିନେ ସେ ନିଜକୁ ଆବିଷ୍କାର କଲା ନୂଆ ଭାବରେ, ପ୍ରତିଟି ଚିନ୍ତା ଓ ଚେତନା ଭିତରେ ସଂପୃକ୍ତ ହେଇଗଲା ସୁଜାତାର ବ୍ୟକ୍ତିତ୍ୱ ।

ହଠାତ୍ ଦିନେ ଆବିଷ୍କୃତ ହେଲା ଚିନ୍ମୟ ଆଉ ଚିନ୍ମୟ ହେଇ ରହିନି । ସେ ହେଇଯାଇଛି ସୁଜାତାମୟ ।

ପ୍ରଭୁ ବୀରଖମ୍ବ, ତମେ ଚିହ୍ନୟର ଗୁହାରି ଘେନା କର । ଚିହ୍ନୟର ଆନନ୍ଦ ଓ ତମର ଗର୍ବକୁ ତୋଳି ଧର ଚିରକାଳ । ତାର ମନବାଞ୍ଛା ପୂରଣ ହେଉ ପ୍ରଭୁ !!!

ସମସ୍ତଙ୍କର ଅନ୍ୟମନସ୍କତା ଭିତରେ ହାଡୁ ଦଳେଇ ବିଦାୟ ନେଉଚି । ବିଦାୟ ପୂର୍ବରୁ ଅଥଚ ଗୋଟେ ପ୍ରଶ୍ନ ଆମକୁ ସେ ପଚାରୁଛି : ମୁଁ ଦେଶିଆ ଲୋକ, ପାଠଶାଠ କିଛି ମତେ ଜଣା ନାହିଁ । କିନ୍ତୁ କହିପାରିବ ତମେମାନେ, ଏ ସଂସାରକୁ କିଏ ପାପ ଆଣିଲା ? ଯେଉଁ ପାପରୁ କାଣିଚାଏ ମୋ ପୁଅ ଭାଗରେ ପଡ଼ିଯାଇଛି, କିଏ ଗାନ୍ଧୀ ମହାପ୍ରଭୁଙ୍କୁ ହତ୍ୟା କଲା ? ଲାଲ୍ ବାହାଦୂର ଶାସ୍ତ୍ରୀଙ୍କର କାହିଁକି ଅପମୃତ୍ୟୁ ହେଲା ? ନିଜ ଚାକର ହାତରେ ଇନ୍ଦିରାଗାନ୍ଧୀର ପ୍ରାଣ ଗଲା, କହି ପାରିବ ତୁମେମାନେ ? କାହିଁକି ଏତେ ପାପ, ଅନ୍ୟାୟ !!

ପରାଜୟର ଗ୍ଲାନିରେ ସେ ଭାଙ୍ଗିପଡ଼ି ଫେରି ଯାଇଛି ଜଙ୍ଗଲ ଭିତରକୁ କାଠ କାଟିବାକୁ। ଦୂରରୁ ଶୁଭୁଛି କାଠ କାଟିବାର ଠକ୍ ଠକ୍ ଆବାଜ୍ । ଫେଣ୍ଟି ହେଇ ଯାଉଛି ପକ୍ଷୀମାନଙ୍କର କିଚିରିମିଚିରି ସହିତ ପବନରେ ଭାସି ଆସୁଥିବା ଆଦିବାସୀ ଯୁବକ ଯୁବତୀଙ୍କର ଗୀତ ।

ଜୀବନ ଫଟୋ ତୋଳୁଛି । ପକ୍ଷୀମାନଙ୍କର କଳରବକୁ ଟେପ୍ କରୁଛି । ଭବିଷ୍ୟତରେ ଉପଯୋଗ କରିବା ପାଇଁ । ସମସ୍ତେ ନିର୍ବାକ୍ ଶବ୍ଦହୀନ । ଚଳଚ୍ଚିତ୍ର ପରି ଘଟିଯାଉଛି ଘଟଣା ସବୁ । ବୀରଖମ୍ବଙ୍କୁ ଶେଷ ନମସ୍କାର ଜଣାଇ ଏଥର ଆମେ ବାହାରି ପଡ଼ିଲୁ । ଆକାଶରେ ସେତେବେଳକୁ ଖଣ୍ଡେ ଖଣ୍ଡେ କଳା ମେଘ । ଜଙ୍ଗଲ ରାସ୍ତା ଦେଇ ଆମେ ତିନିହେଁ ସ୍କୁଟରଟି ଧରି ଯେତେବେଳେ ବାହାର ପୃଥିବୀର ଆଲୋକ ସନ୍ଧାନରେ ବାହାରିଲୁ ଠିକ୍ ସେତିକିବେଳେ ଏଇ ଘଟଣାଟି ଘଟିଲା । ମୋର ଦୁଇବନ୍ଧୁ ସେ ଦୃଶ୍ୟ ହୁଏତ ଦେଖିଛନ୍ତି କି ନାହିଁ, ମୁଁ ଜାଣେନା କିମ୍ବା ଜାଣିବାକୁ ଇଚ୍ଛା କରିନି । ଘଟଣାଟି ଏଇପରି ।

ଆକାଶରୁ ମେଞ୍ଚାଏ କଳାମେଘ ଆସି ନେସି ହେଇ ଯାଇଛି ଦେଶିଆ ଟୋକାଟାର ମୁହଁରେ । ମୁହଁରୁ ଅନୁମାନ କରି ହେଉଛି ସେ ଆଉ କେହି ନୁହେଁ ହାଡୁ ଦଳେଇର ପୁଅ । ହାତରେ ଟାଙ୍ଗିଆ, ମୁହଁରେ ତାଚ୍ଛଲ୍ୟର ହସ । ହସୁ ହସୁ ସେ ଫୁଲି ଉଠୁଛି । ବଢିଯାଉଛି ଦୈର୍ଘ୍ୟ, ପ୍ରସ୍ଥ ଆଉ ଉଚ୍ଚତାରେ । ଏଇଲେ ଯିମିତି ସାରାସଂସାରକୁ ଗ୍ରାସ କରି ବସିବ ସେ ।

ଓଠରୁ ତାର ଝରି ପଡୁଛି ରୁଧିର । କଳ୍କୀର ଶେଷ ଅଭିଯାନ । ମୁଁ ଆଖି ମୁଦି ଦେଲି।

ପ୍ରଚଣ୍ଡ ବର୍ଷା ସତ୍ତ୍ୱେ ଘରେ ପହଞ୍ଚିବା ପର୍ଯ୍ୟନ୍ତ ମୁଁ ଆଉ ପଛକୁ ଫେରି ଚାହିଁନି ।

# ଚଷମା

ଭଦ୍ରଲୋକ ଜଣକ ପ୍ରଥମରୁ ଗମ୍ଭୀର ପ୍ରକୃତିର ଜଣାପଡୁଥିଲେ । ମାତ୍ର ଟ୍ରେନ ଚାଲିବାର କେଇଟି ମୂହୂର୍ତ୍ତ ପରେ ତାର ଏ ଧାରଣା ବଦଳି ଯାଇଥିଲା । ଭଦ୍ରଲୋକ ସଂପ୍ରତି ଦକ୍ଷିଣ ଭାରତ ପରିକ୍ରମା କରି ଫେରୁଛନ୍ତି ବୋଲି ଜଣାଇ ସାରିଲେଣି କଥା ପ୍ରସଙ୍ଗରେ । ବିରୂପାକ୍ଷ ଓ ତା ସହ କିଛି ସମୟ ପୂର୍ବରୁ ପ୍ଲାଟଫର୍ମରେ ଦୋସ୍ତୀ ଜମେଇଥିବା ବନ୍ଧୁ ଜଣକ ବି ଭଦ୍ରବ୍ୟକ୍ତିଙ୍କ ଭ୍ରମଣ ବୃତ୍ତାନ୍ତ ମନଯୋଗ ସହକାରେ ଶୁଣିଯାଉଥିଲେ । ଅଥଚ ସେହି ଅପରିଚିତ ବନ୍ଧୁଜଣଙ୍କ ନାମ ମଧ୍ୟ ପଚାରିବାକୁ ଭୁଲିଯାଇଛି ବିରୂପାକ୍ଷ, ତାର ଖିଆଲ ନାହିଁ । ସଚେତନ ହେବା ପରେ ଯେତେବେଳେ ପ୍ରଶ୍ନ କରିବ ବୋଲି ଭାବିଛି, କାଳେ ଖରାପ ଭାବିବେ, ଏଇ ଆଶଙ୍କାରେ କଥାର ଗତି ବଦଳାଇ ଦେଇଥିଲା ସେ ।

ଦୁହିଁଙ୍କ ସମନାରେ ବସିଥିବା ଭଦ୍ରଲୋକ ଜଣକ ସେତେବେଳକୁ ଅନର୍ଗଳ ଗପି ଚାଲିଥିଲେ : କାଶୀକୁ ରମେଶ୍ୱରମ୍ ଯିବା ବାଟରେ ଏଇଠି ହିଁ ସେମାନେ ବିଶ୍ରାମ ନିଅନ୍ତି । ତା ଛଡ଼ା ତ୍ରିକାଳୀକୁଣ୍ଡମ୍‌ର ପ୍ରାକୃତିକ ଦୃଶ୍ୟ ଆମ ଓଡ଼ିଶାର ସପ୍ତଶଯ୍ୟା ନତୁବା ଘାଗରାଠାରୁ କୌଣସି ଗୁଣରେ ବେଶି ନୁହେଁ । ଅବଶ୍ୟ ଏଠି ଲକ୍ଷ୍ୟ କରିବା କଥା ପକ୍ଷୀ ଯୁଗଳଟିର ସମୟ ସଚେତନତା । ବିଦେଶୀମାନେ ସେମାନଙ୍କର ଘଡ଼ି ମିଳାଇ ନିଅନ୍ତି ପକ୍ଷୀଯୁଗଳଟିର ଆଗମନ ପରେ ପରେ । ଭଦ୍ରଲୋକ ପୁଣି କଥାର ମୋଡ଼ ବଦଳେଇଲେ । ସେଠାକୁ ଯିବା ପୂର୍ବରୁ ଅନେକଗୁଜବ ଶୁଣିଥିଲେ ସେ । ଏପରିକି ପକ୍ଷୀ ଯୁଗଳର ଆଗମନର କେତୋଟି ମୁହୂର୍ତ୍ତ ପୂର୍ବରୁ ସୂର୍ଯ୍ୟଙ୍କର ତେଜ କମିଆସେ, ଆକାଶ ଦେଖାଯାଏ ମେଘାଚ୍ଛନ୍ନ, ପବନ ହୁଏ ନିଶ୍ଚଳ, ପକ୍ଷୀଯୁଗଳର ପ୍ରତ୍ୟାବର୍ତ୍ତନ ପରେ ପରେ ପରିସ୍ଥିତି ପୂର୍ବାବସ୍ଥାକୁ ଫେରିଆସେ, ଇତ୍ୟାଦି ।

ତ୍ରିକାଳୀକୁଣ୍ଡମ୍ ପର୍ବତର ଗୁରୁତ୍ୱ ସଂପର୍କରେ ସେ ପୁରାଣ ଶାସ୍ତ୍ରକୁ ଫେରିଗଲେ । ତ୍ରେତୟା ଯୁଗରେ ସୀତାଙ୍କୁ ରାବଣଠାରୁ ଉଦ୍ଧାର କରିବା ପାଇଁ ଜଟାୟୁ ପକ୍ଷୀ ହିଁ ସେହି ପର୍ବତ ଉପରେ ଯୁଦ୍ଧ କରିଥିଲା । ଭଦ୍ରଲୋକଙ୍କୁ ସାମନା କରି ଓ ବିରୂପାକ୍ଷ ସହ ଘନିଷ୍ଠତା ଆରମ୍ଭ କରିଦେଇଥିବା ବନ୍ଧୁଜଣଙ୍କ ହଠାତ୍ ପ୍ରଶ୍ନ କଲେ: ତା ହେଲେ ଏ ପକ୍ଷୀ ଦୁଇଟି ଜଟାୟୁର ବଂଶଧର ନିଶ୍ଚୟ ।" ଭଦ୍ରଲୋକ ନୀରବ ରହିଲେ । କଥାର ଗତି ବଦଳି ଚାଲିଲା ବାରମ୍ବାର।

ବିରୂପାକ୍ଷ ସେତେବେଳକୁ ଜାଣିସାରିଥିଲା ଆଗାମୀ ପରିସ୍ଥିତି ସମ୍ପର୍କରେ । ହୁଏତ କିଛି ଅଘଟଣ ଘଟିପାରେ-ଏମିତି ଏକ ଆଶଙ୍କାରେ ସେ ସମସ୍ତଙ୍କ ଅଲକ୍ଷ୍ୟରେ ଖସିଯାଇଥିଲା ଆଲୋଚନାର ବୃତ୍ତରୁ । ପ୍ରଥମେ କଳା ରଙ୍ଗର କୋଟଟା ତା ଆଖିରେ ପଡ଼ିଲା । କିଛି ସମୟ ପରେ ସେଇ କଳା କୋଟ ପରିହିତ ବ୍ୟକ୍ତିଜଣଙ୍କ, ଯାହାଙ୍କୁ ଟି.ଟି.ସି. କୁହାଯାଇପାରେ, ଆସି ପହଁଞ୍ଚି ଯାଇଥିଲେ ପାଖରେ । ଭଦ୍ରବ୍ୟକ୍ତି ଜଣଙ୍କ କଥା ବନ୍ଦ ରଖି ବ୍ୟାଗରୁ ଟିକେଟ କାଢିଲେ । ତା ପାଖରେ ବସିଥିବା ପରିଚିତ ଅଥଚ ନାଁ ନ ଜାଣିଥିବା ବନ୍ଧୁ ଜଣକ ସେମିତି ନିର୍ବେଦ ହୋଇ ବସିରହିଥିଲେ । ଯା ପରେ ତାର ପାଳି । ସେଇଆ ହେଲା । ବିରୂପାକ୍ଷ ଭାବିଥିଲା କହିଦେବ : ଟିକେଟ କରିନି ।" ହଠାତ୍ ତା ମୁଣ୍ଡକୁ ଗୋଟେ ଆଇଡ଼ିଆ ଜୁଟିଗଲା । ଟି.ଟି.ସି ଏଥର ତା ଆଡ଼କୁ ହାତ ବଢାଇଦେଲା ସ୍ୱଭାବସୁଲଭ କାଇଦାରେ । ବିରୂପାକ୍ଷ ମୁହଁରେ ଅସହାୟବୋଧର ଗୋଟେ ଧୂସର କଇଁ ଫୁଟିଉଠିଲା । ପକେଟ ଅଣ୍ଡାଳିଲା । ଖୁବ୍ ଦୁଃଖରେ ତା ପାଟିରୁ ବାହାରି ପଡ଼ିଲା : ଟିକେଟଟା ଗଲା କୁଆଡ?" ଅଥଚ ବଡ଼ ହୋଇଗଲା ପରେ ମିଛି କହିବାକୁ କେତେ ଅଡୁଆ ଲାଗେ ଅନୁଭବ କରୁଥିଲା ବିରୂପାକ୍ଷ । ଟିକେଟ ସେ ଆଦୌ କରିବା କଥା ଚିନ୍ତା କରି ନ ଥିଲା ଏଯାଏଁ । ଟି.ଟି.ସି. ସେତେବେଳକୁ ତା କୋଟ ପକେଟରୁ ବାହାର କରିସାରିଥିଲା ରସିଦ ବହିଟା । ସ୍ୱଭାବସୁଲଭ ଭଙ୍ଗୀରେ ସେ ଏଥର କହିଲା : କୋଉଠୁ ଉଠିଲେ ?" : ଏଇଠୁ ।" ସାଧାରଣ ଭାବରେ କହୁଥିଲା ବିରୂପାକ୍ଷ । ସେତେବେଳକୁ ଭଦ୍ରଲୋକ ତାଙ୍କ କଥା କହିବା ବନ୍ଦ କରି ତା ଆଡ଼କୁ ଚାହୁଁଥିଲେ ।

ଏପରିକି ପାଖରେ ବସିଥିବା ବନ୍ଧୁଜଣଙ୍କ ତା ଆଡ଼େ ଗୋଟେ କରୁଣ ଦୃଷ୍ଟି ପକାଉ ପକାଉ କହିଲେ : ଟିକିଏ ସାବଧାନ ନ ହେଲେ ସଇତାନଗୁଡ଼ାକ ଆପଣଙ୍କ ତୁଟି କାଟି ନେଇଯିବେ ।" ସେତେବେଳକୁ ଟି.ଟି.ସି. ବଢେଇ ସାରିଥିଲା ଖଣ୍ଡେ କାଗଜ । ବିରୂପାକ୍ଷ ତା ଆଡ଼କୁ ଦୃଷ୍ଟି ଫେରେଇ ନେଲା । ଟି.ଟି.ସି.ର ମୁହଁରେ ହସହସ ମୁଦ୍ରା । ସେ ଠିକ୍ ଲକ୍ଷ୍ୟ କରିପାରିଥିଲା । ହୁଏତ ଟି.ଟି.ସି. ଜାଣିପାରିଥିଲା ତା ଅପରାଧ ସଂପର୍କରେ । ସମସ୍ତଙ୍କୁ ଫାଙ୍କି ଦେବାକୁ ଚେଷ୍ଟା କରୁ କରୁ ଧରାପଡ଼ିଯାଇଛି ଯେମିତି । ଠିକ୍ ଏତିକିବେଳକୁ

ମନେ ପଡ଼ିଗଲା ବନ୍ଧୁ ପରେଶର ଜଣେ ଟି.ଟି.ସି.ର ବିବୃତ୍ତି ସମ୍ପର୍କରେ ମତ । ପରେଶ ନିଜେ କହୁଥିଲା ସେମାନେ କୁଆଡ଼େ ଆପେ ଆପେ ଜାଣିପାରନ୍ତି ବିନା ଟିକେଟ ଯାତ୍ରୀମାନଙ୍କୁ । ଦୀର୍ଘ ଦିନର ଅଭିଜ୍ଞତା ଏ ବିଷୟରେ ସେମାନଙ୍କୁ ସାହାଯ୍ୟ କରିଥାଏ ।

ରସିଦ କାଗଜକୁ ପଢିବାକୁ ଲାଗିଲା ବିରୂପାକ୍ଷ ମନଯୋଗ ସହକାରେ । ଏକ୍‌ସେସ୍ ଫେୟାର ଟିକେଟ ନମ୍ବର : ୫୬୩୪୪୦ । କିନ୍ତୁ ଆଗକୁ ଯିବା ପୂର୍ବରୁ ସେ ଅଟକିଗଲା । ଟି.ଟି.ସି. ତାକୁ ତ ଏ ସଂପର୍କରେ କିଛି ପଚାରି ନ ଥିଲା । ହୁଏତ ସେ କହିଦେଇଛି କଟକ ଯିବ ବୋଲି ? ସର୍ବଜ୍ଞପରି ପାଞ୍ଚଟଙ୍କା ଫାଇନ୍ ସାଙ୍ଗକୁ ଖୋର୍ଦ୍ଧାରୁ କଟକ ଭଡ଼ାକଷି ରସିଦ୍ ବଢେଇଦେଲା ଟି.ଟି.ସି. ଜଣଙ୍କ ।

ଭୁବନେଶ୍ୱରରେ ତ ଓହ୍ଲାଇବା କଥା ବିରୂପାକ୍ଷର । ଆଜି କିନ୍ତୁ ସେ କଟକ ଯିବବୋଲି ଇଚ୍ଛା କରିଥିଲା । ଗୋଟେ ଏନ୍‌ଗେଜ୍‌ମେଣ୍ଟ ଅଛି । କଟକଯିବା ତା ପାଇଁ ନୂଆଘଟଣା ନୁହେଁ। ତଥାପି ତାର କାହିଁକି ମନେହେଲା ଅନେକ ଦିନପରେ ସେ କଟକ ଯାଉଛି । ବିରୂପାକ୍ଷ ମନେ ପକେଇଲା । ଅନ୍ତତଃ ଦୁଇବର୍ଷ ପରେ, ମୀନାକ୍ଷୀର ବିବାହ ପରେ ସେ କଟକ ଯାଇନି । ଯିବାକୁ ଇଚ୍ଛା କରିନି ହୁଏତ । ଆଜି ସେ କଟକ ଯାଉଛି ମୀନାକ୍ଷୀର ସ୍ୱତନ୍ତ୍ର ନିମନ୍ତ୍ରଣ ପାଇ । ବିବାହ କରିବାର ଦୁଇବର୍ଷ ଭିତରେ ବିରୂପାକ୍ଷ ଅନେକ ଚିଠି ପାଇଛି ମୀନାକ୍ଷୀଠୁ । ଗୋଟିକର ଉତ୍ତର ବି ଦେଇନି ଏ ଯାଏଁ । ଉତ୍ତରକୁ ଅପେକ୍ଷା ନ କରି ମିନାକ୍ଷୀ ଚିଠି ଦିଏ ।

ଏବେ ମୀନାକ୍ଷୀର ପୁଅ ହୋଇଛି । ପୁଅର ଏକୋଇଶିଆକୁ ନିମନ୍ତ୍ରଣ କରିଛି ମୀନାକ୍ଷୀ । ଝିଅଗୁଡ଼ାକ ସତରେ ମୁସ୍କିଲ୍ ଛଳନା କରିପାରନ୍ତି ! ନିଜକୁ ନିଜେ କହୁ କହୁ ହସିପକେଇଲା ବିରୂପାକ୍ଷ । ମୀନାକ୍ଷୀ ଲେଖିଥିଲା ପୁଅଟା କୁଆଡ଼େ ଅବିକଳ ତାରି ପରି ହୋଇଛି । ଠିକ୍ ତାରି ଭଳି ଆଖି, କାନ, ପାଟି, ଓଠ ଇତ୍ୟାଦି । କୌଣସି ଉତ୍ତର ନ ଲେଖି ଏବେ ମିନାକ୍ଷୀ ପାଖରେ ପହଞ୍ଚିବାକୁ ସ୍ଥିର କରିଛି ବିରୂପାକ୍ଷ । ମୀନାକ୍ଷୀର ଚିଠିରୁ-ତାର ସ୍ୱାମୀ ଅବିନାଶ ପେଟ ପୋଷିବାଲାଗି କଣ ଗୋଟେ ଚାକିରୀ କରେ, ଏତିକି ବୁଝିଛି ସେ । ଅଧିକା ଜାଣିବାଲାଗି କେବେ ଚେଷ୍ଟା କରି ନାହିଁ ।

ଏ ପର୍ଯ୍ୟନ୍ତ ସେ ନିଜେ ବେକାର । ଅବିବାହିତ । ସବୁଠୁ ତାର ବେଶି ଦୁଃଖ ହେଉଛି ଅନ୍ୟମାନେ ତାକୁ ନ ବୁଝିପାରିବାର ଛଳନା କରିବାର କାରଣ ସେ ଏ ଯାଏଁ ଖୋଜି ପାଇନି । ଚିଠିରୁ ବିରୂପାକ୍ଷ ଜାଣି ପାରିଛି ଅବିନାଶକୁ ନେଇ ମିନାକ୍ଷୀ ଖୁସି ନୁହେଁ । ତେବେ ପ୍ରେମିକାମାନଙ୍କର ଏଇଟା ଖସିଯିବାର ନୂଆବାଟ ବୋଲି ଧରିନେଇଛି ବିରୂପାକ୍ଷ, କିନ୍ତୁ ବିରୂପାକ୍ଷ ମନରେ ଦୁଃଖ ଆସିଛି ଯେତେବେଳେ ସେ ମୀନାକ୍ଷୀର ଚିଠିରୁ

ଜାଣିପାରିଛି ତାର ଆଖି ସଂପର୍କରେ । ପାୱାର କମି ଆସୁଚି । ଏପରିକି ଅନ୍ଧୁଣୀ ହୋଇଯିବାର ଆଶଙ୍କା ଅଛି । ଏମିତି ଗୋଟେ ସମ୍ବାଦ ପାଇ ପ୍ରଥମେ କିଛିଦିନ ଦୁଃଖ ଆସିଥିଲା ବିରୂପାକ୍ଷ ମନରେ । ଯୁଆଡ଼େ ଥିଲେ ବି ମୀନାକ୍ଷୀକୁ ଦିନେ ସେତ ଭଲପାଇଥିଲା । ଏବେତାର ଦୁଃଖରୁ କିଛିଭାଗ ନେବାକୁ ସେ କୁଣ୍ଠା ପ୍ରକାଶ କରିବ କାହିଁକି ? କିନ୍ତୁ ପର ମୁହୂର୍ତ୍ତରେ ସେ ବୁଝାଇ ଦେଇଥିଲା ନିଜକୁ : ମୀନାକ୍ଷୀକୁ ସମ୍ଭାଳିବା ଦାୟିତ୍ୱ ଏଣିକି ଅବିନାଶ ନାମକ କୌଣସି ଦ୍ୱିପାଦ ବିଶିଷ୍ଟ ଜୀବର ।"

ମୀନାକ୍ଷୀର ସ୍ୱାମୀ ସହ ତାର କେବେ ଭେଟ ହୋଇନାହିଁ ଦୁଇବର୍ଷ ଭିତରେ । ପୁଅ ଏକୋଇଶିଆରେ, ପୁରୀ ଷ୍ଟେସନରୁ ଗାଡ଼ିରେ ଉଠିଥିଲା ବିରୂପାକ୍ଷ । ଆସନ୍ତା କାଲି ମୀନାକ୍ଷୀ ପୁଅର ଏକୋଇଶିଆ । ଆଜି ରାତି ଗାଡ଼ିରେ ସେଠି ପହଞ୍ଚିବାକୁ ସ୍ଥିର କରିଥିଲା ମନେ ମନେ । ହାତରେ ଖେଳଣା ପୁଡ଼ିଆଟିଏ ମୀନାକ୍ଷୀର ପୁଅ ପାଇଁ ।

ବିରୂପାକ୍ଷ ହୁଏତ କିଛି ସମୟ ହେଲା ଭୁଲିଯାଇଥିଲା ଯେ ଟି.ଟି.ସି. ଟଙ୍କା ଅସୁଲ ପାଇଁ ତାର ଅପେକ୍ଷା କରିଛି । ଏଥର ସେ ନିଜ ପାଖକୁ ଫେରି ଆସିବା ସଂଗେ ସଂଗେ ଖଣ୍ଡେ ଦଶଟଙ୍କିଆ ନୋଟ୍ ବଢେଇଦେଲା ଲୋକଟି ହାତକୁ । କିଛିକ୍ଷଣ ପରେ ଲୋକଟି ତା ହାତରେ କିଛି ଖୁଚୁରା ଗୁଂଜି ଦେଇ ଚାଲିଗଲା ଅନ୍ୟ ସିଟ୍ ଆଡ଼କୁ । ଅଥଚ ସେ ଭ୍ରୁକ୍ଷେପ କଲାନି ବିରୂପାକ୍ଷର ଭିତରେ ଉଠୁଥିବା ଯୁକ୍ତି ଓ ପ୍ରତିଯୁକ୍ତି ସବୁ କେମିତି ଅସହାୟତାର ବୁଲ୍‌ଡ଼ୋଜର୍‌ରେ ଖଣ୍ଡ ଖଣ୍ଡ ହୋଇ ଛିଟିକି ପଡୁଛନ୍ତି ।

ଭଦ୍ରଲୋକ ଜଣକ ଏହା ଭିତରେ ଦକ୍ଷିଣ ଭାରତ ସଂପର୍କୀୟ ଗପ ପୁଣି ଆରମ୍ଭ କରିଦେଇଛନ୍ତି । ପାଖରେ ବସିଥିବା ବଂଧୁ ଜଣକ ତା ଆଡ଼କୁ ଚାହିଁବାର ଲକ୍ଷ୍ୟ କଲା ବିରୂପାକ୍ଷ । ସେହି ଚାହାଁଣୀରେ କେମିତି ଗୋଟେ ଅର୍ଥ ଅଛି ବୋଲି ମନେ ହେଉଥିଲା ତାକୁ । ସହଯାତ୍ରୀ ବଂଧୁ ଜଣକ କିଛି କହିବା ଉଦ୍ଦେଶ୍ୟରେ ପାଟି ଖୋଲିଲେ : ଏଇଟିକୁ ସୁବିଧାରେ ରଖନ୍ତୁ, ନଚେତ୍ ଚୋରି ହୋଇଯାଇପାରେ ପୁଣି ।" ତାର ବୋକାମୀ ଲାଗି ଦୁଃଖ ପ୍ରକାଶ କରୁଥିଲେ ସେ । ଅଥଚ ସେଇ ଗୋପନ କୌଶଳଟିକୁ ଖୋଲି ଦେବା ଲାଗି ବିରୂପାକ୍ଷ ଥିଲା ସଂପୂର୍ଣ୍ଣ ଅନିଚ୍ଛୁକ । ୟା ଭିତରେ ଭଦ୍ରଲୋକ ଘୁମେଇ ଯିବାକୁ ଆରମ୍ଭ କରିଦେଇଥିଲେ । ବଂଧୁ ଜଣକ ଗପ ଯୋଡ଼ି ସାରିଥିଲେ ତା ସହ । ଏବଂ ସବୁ ଗପର ଅସଲ ରହସ୍ୟ ଥିଲା ସମୟ କଟେଇବା ।

ଭୁବନେଶ୍ୱରରେ ଗାଡ଼ି ଲାଗିଲା । କଟକକୁ ଟିକେଟ କାଟିସାରିବା ପରେ ବି ଏଇଠି ଓହ୍ଲେଇଯିବାକୁ ସ୍ଥିର କଲା ବିରୂପାକ୍ଷ । ଭୁବନେଶ୍ୱରରେ କୌଣସି ସାଙ୍ଗ ପାଖରେ ରାତିଟା

କଟେଇବାକୁ ସ୍ଥିର କରିସାରିଥିଲା ମନେ ମନେ । ପରେଶ ବାଣୀବିହାରରେ ରହୁଛି । ରୁମ୍ ନଂ ୬୨ । ଲେବର ୱେଲ୍‌ଫେୟାର ଡ଼ିପାର୍ଟମେଣ୍ଟରେ ଦାଦା ସାଜିଛି । କାହାଠୁ ଗୋଟେ ଶୁଣିଥିଲା ସେ । ଏତେ ରାତିରେ କଟକ ଯାଇ ମୀନାକ୍ଷୀ କିମ୍ବା ତାର ସ୍ୱାମୀ ଅବିନାଶକୁ ହଇରାଣ କରିବାକୁ ଇଚ୍ଛା ନ ଥିଲା ବିରୂପାକ୍ଷର ।

ଭୁବନେଶ୍ୱର ଷ୍ଟେସନରେ ଓହ୍ଲେଇବା ପରେ ପରେ ଅନ୍ୟମନସ୍କ ଭାବେ ପହଞ୍ଚି ସାରିଥିଲା ମାଷ୍ଟର କ୍ୟାଣ୍ଟିନ୍ ଛକ ପାଖରେ । ହଠାତ୍ ଏକ ଅଜଣା ଆଶଙ୍କାରେ ତାର ରକ୍ତ ଗୁଡ଼ାକ ଜମାଟ ବାନ୍ଧିଲା ଭଳି ମନେ ହେଲା । ଭୁଲବଶତଃ ସେଇ ସହଯାତ୍ରୀ ବଂଧୁଜଣଙ୍କର ପୁଡ଼ିଆଟିକୁ ଧରି ସେ ଚାଲି ଆସିଥିଲା । ଭାବିଲା ଫେରିଯିବ ଷ୍ଟେସନକୁ । ସେତେବେଳକୁ ଟ୍ରେନ୍ ହ୍ୱିସିଲ୍ ମାରିସାରିଥିଲା ବୋଧେ । ଅଥଚ ଟ୍ରେନ୍ ଭିତରେ ରହିଯାଇଛି ମୀନାକ୍ଷୀର ପୁଅ ପାଇଁ ଆଣିଥିବା ଖେଳନା ପୁଡ଼ିଆଟି । ଖେଳନା ପୁଡ଼ିଆଟିର ଉପରେ ଅତି ସୁନ୍ଦର ଭାବରେ ଲେଖିଥିଲା ତାର ନାଁ ।

ବିରୂପାକ୍ଷ ସାମନାରେ କିଛି ଉପାୟ ନ ଥିଲା । ନାଁ ନ ଜାଣିଥିବା ଏଇ ବଂଧୁଜଣଙ୍କର ପୁଡ଼ିଆଟିକୁ ଠିକଣା ପାଇବା ଉଦ୍ଦେଶ୍ୟରେ ଖୋଲିବାକୁ ଚେଷ୍ଟାକଲା ସେ । ଖୁବ୍ ସହଜରେ ଖୋଲିଗଲା ପୁଡ଼ିଆଟି । ଭିତରେ ଗୋଟେ ଚଷମା । ବୁଝିପାରିଲାନି ଏହାର ରହସ୍ୟ ବିରୂପାକ୍ଷ । କଣ ହୋଇପାରେ ? ନିଜକୁ ବିଶ୍ୱାସ କରିପାରିଲାନି । କୌତୁହଳ ବଢିଯାଇଥିଲା ତାର । ଭିତରେ ଗୋଟେ ରସିଦ୍ । ଗୋଲାପୀ ରଂଗର କାଗଜ । ଅତି ସତର୍କତାର ସହ ପଢିବାକୁ ଲାଗିଲା । ମୀନାକ୍ଷୀ ମିଶ୍ର, କେୟାର ଅଫ ଅବିନାଶ ମିଶ୍ର ।" ଗୋଟେ ବଡ଼ ଧରଣର ଦୁର୍ବଳତା ସେତେବେଳକୁ ବିରୂପାକ୍ଷର ସମଗ୍ର ସତ୍ତାକୁ ଚରିଯାଇଥିଲା । ଆଉ ବେଶି ବାଟ ଆଗେଇଯିବାକୁ ସାହସ ନଥିଲା ତାର । ଗୁଡ଼ାଏ ଅଢବ ଚିଂତା ତା ମୁଣ୍ଡ ଭିତରକୁ ପଶିଗଲା । ହୁଏତ ଏତେ ସମୟ ଧରି ଯେଉଁ ବଂଧୁଙ୍କ ସହ ତାର କଥାବାର୍ତ୍ତା ହୋଇଥିଲା ସେ ନିଶ୍ଚୟ ଅବିନାଶ ହୋଇଥିବ ? ଅବିନାଶଠୁ ସବୁଘଟଣା ଶୁଣିବାପରେ ମୀନାକ୍ଷୀ ଯେତେବେଳେ ସେଇ ଖେଳଣା ପୁଡ଼ିଆଟିକୁ ଖୋଲିବାକୁ ଯାଇ ତାର ନାଁ ଓ ହସ୍ତାକ୍ଷରକୁ ଦେଖିବ, କଣ ଭାବିବ ? ଏମିତି ଅଜବ ଚିଂତାରେ ସେ ଆଗେଇ ଯାଉ ଯାଉ ଗୋଟେ ରିକ୍ସାରେ ବସି ପଡ଼ିଲା, ହୁଏତ କାଲି ସକାଳେ କଟକ ଯିବନି ସେ, ଆଜି ରାତିଟା ବାଣୀବିହାରରେ ପରେଶ ପାଖରେ କଟେଇବା ଉଦ୍ଦେଶ୍ୟରେ ରିକ୍ସାବାଲାକୁ ନିର୍ଦ୍ଦେଶ ଦେଲା : ଶୀଘ୍ର ଚାଲ୍, ହୋଟେଲ୍ ବନ୍ଦ ହୋଇଯିବ ।" ରିକ୍ସା ଚାଲୁଥିଲା ଆଗକୁ, ଅଥଚ ବଂଧୁଙ୍କ ଠାରୁ ଅଜାଣତରେ ନେଇଆସିଥିବା ଚଷମାଟିକୁ ଆଖିରେ ଦେଇ ଏକ ଅବର୍ଣ୍ଣନୀୟ ଅସହାୟତାରେ ବୁଡ଼ି ଯାଉଥିଲା ସେ ।

# ଗନ୍ଧ

ବିଟପୀ ନାରୀର କପଟ ହସ ପରି ଏ ସହରର ବର୍ଷା । ସେ ହସର ଅର୍ଥ ବୁଝିବା ମୁସ୍କିଲ । ଏ ବର୍ଷାର ଉଦ୍ଦେଶ୍ୟ କଣ ? ଏଯାବତ୍ ମୁଁ ଉଦ୍‌ଘାଟନ କରି ପାରିନାହିଁ । ଚେସ୍ ବୋର୍ଡ଼ର ଏଇ ଛୋଟ ସହରଟିର ଉପାନ୍ତରେ ଦେଓଘାଟୀ, ସହରଟିକୁ ଘେରି ରହିଛି ପାହାଡ଼, ପାହାଡ଼ର ଯାବତୀୟ ସବୁଜିମା, ନୀଳ ସମୁଦ୍ରର ପ୍ରତ୍ୟୟ ।

ଏମିତି ଏକ ଅଜଣା ସହରରେ ତିନି ବର୍ଷରୁ ଅଧିକ କାଳ ହେଲା ମୁଁ ରହିଯାଇଛି, ନିଜ ପେଟ ପାଟଣାର ଦାୟରେ । ଅନେକ ବନ୍ଧୁ ଓ କିଛି ନିରର୍ଥକ ଶତ୍ରୁଙ୍କୁ ନେଇ ମୁଁ ଏଠି ଜୀବନ ଯାପନର ସ୍ଥୂଳ ପ୍ରଣାଳୀଟିଏ ବାଛି ନେଇଛି । ଧରି ନେଇଛି କିଛିଦିନ ପାଇଁ ଏଇଟା ଗୋଟେ ଆତ୍ମନିର୍ବାସନ । କିନ୍ତୁ କାହିଁକି ?

ଏ ସହରରେ ଜୀବନ ସହ ମୋର ଘନିଷ୍ଠତା ବଢ଼ିଛି । ସେ ବି ମୋ ଭଳି ବିଦେଶାଗତ । ମ୍ୟୁଜିକ୍‌ରେ ତାର ସଉକ୍ । ଏବେ ସେଇଟାକୁ ସେ ବୃତ୍ତି କରି ନେଇଛି । ସରକାରୀ ଚାକିରୀ ଆଳରେ, ନିଶା ରୂପାନ୍ତରିତ ହେଇଛି ପେଶାରେ । ମୋ ପଛରେ ବି ଗୋଟେ ଷ୍ଟାମ୍ପ ବାଜିଛି - କମ୍ପାନୀ ଏକ୍‌ଜିକ୍ୟୁଟିଭ୍ ।

କିନ୍ତୁ ପ୍ରତ୍ୟେକଟି ରବିବାରରେ ମୁଁ ଏଇ ଷ୍ଟାମ୍ପଟିକୁ ଯଥା ସମ୍ଭବ ଲିଭେଇ ଦିଏ ଜୀବନକୁ ଭେଟିବା ପରେ ।

ସେଇଭଳି ଆଜି ମଧ୍ୟ ଏକ ରବିବାର ।

ନିଜର ବୃତ୍ତିଗତ ଖୋଳପା ଭିତର ଖସିଯାଇ ଆମେ ଦୁଇଜଣ ସ୍କୁଟରର ଗତି ବଢେଇ ଦେଇଛୁ । ଯାତ୍ରା ଅନିର୍ଦ୍ଦିଷ୍ଟ ଥିଲା ପ୍ରଥମେ, ସ୍କୁଟର ଚାଲିବା ପରେ ସ୍ଥିର କରିନେଲୁ ଆମର ଗନ୍ତବ୍ୟ । ଅତଏବ ସହରର ଅନତିଦୂରରେ ଦେଓଘାଟୀ ବୋଲି ଯାହାକୁ କୁହାଯାଏ, ତାରି ଉପରେ ଝିପି ଝିପି ବର୍ଷାର ଉଚ୍ଚାଟନକୁ ବେଖାତିର କରି ଆମେ ଏବେ ସବୁଜିମାର ନୀଳ ସମୁଦ୍ର ଭିତରେ ପହଁରି ଚାଲିଛୁ ।

ଗତି ଏଥର ନିର୍ଦ୍ଦିଷ୍ଟ । ଦେଓଘାଟୀର ପୂର୍ବ ପାର୍ଶ୍ୱରେ ଯେଉଁ ଛୋଟ ସହରଟି ଅଛି, ଠିକ୍ ତାକୁ ସଂଜ୍ଞାନୁଯାୟୀ ସହରର ତାଲିକାଭୁକ୍ତ କରାଯାଇ ପାରିବ ନାହିଁ, ଯଦିଓ ସେଠି ମହଜୁଦ୍ ଥିବା ସରକାରୀ କୋଠାଘର, ବଗିଚା, ନିଅନ ଆଲୁଅର ଔଦ୍ଧତ୍ୟକୁ ବିଚାରକୁ ନେଲାପରେ ବି କୌଣସି ଏକ ବିଦ୍ୟୁତ୍ ପ୍ରକଳ୍ପ ନିର୍ମାଣର ଆଭିମୁଖ୍ୟରେ ଅବସ୍ଥାପିତ ନାଗରିକ ଅଥବା କର୍ମଚାରୀମାନଙ୍କର ସାମୟିକ ସହାବସ୍ଥାନ ହୋଇପାରେ ।

ଅଗତ୍ୟା ଆମେ ସେଇ ଛୋଟ ଦ୍ୱୀପର ସନ୍ଧାନରେ ଦୁଇଜଣ ନାବିକ । ପ୍ରଥମରୁ କହିରଖେ ସେ ଦ୍ୱୀପର ଜଣେ ପରିଚିତ ଅନୁପ୍ରବେଶକାରୀ ଭାବେ ଜୀବନର ଖ୍ୟାତି ଅଛି ଅନେକ କାଳରୁ । ମୁଁ କିନ୍ତୁ ସଂପୂର୍ଣ୍ଣ ନବାଗତ । ତେବେ ଦୁହିଁଙ୍କର ଗନ୍ତବ୍ୟରେ ଭିନ୍ନତା ଦୃଶ୍ୟମାନ ହେଲେ ବି ଏକତ୍ୱର ମାୟାବର୍ତ୍ତରେ ଆମେ ଥିଲୁ ବନ୍ଦୀ । ଘଟଣାଟିକୁ ଏଇଠି ସରଳ କରିଦେବା ଉଚିତ ।

କିଛିଦିନ ତଳେ ଗାଁରେ ଛୁଟୀ କଟାଇଲା ବେଳେ ଏକ ଖବର ପାଇ ଅବାକ୍ ହୋଇଗଲି । ସେଇଟି ହେଲା, ସନାତନ ବିବାହ କରିଛି । ତାହା ପୁଣି ନିଜ ବାପା ମାଆଙ୍କ ଇଚ୍ଛା ବିରୁଦ୍ଧରେ । ସନାତନ ମୋର ରକ୍ତ ସମ୍ପର୍କୀୟ ନ ହେଲେ ବି ମୋର ତା ପ୍ରତି ଶ୍ରଦ୍ଧା ଏବଂ ତାର ମୋ ପ୍ରତି ଅନୁରକ୍ତି ଆମ ଦୁହିଁଙ୍କୁ ଯେ କୌଣସି ରକ୍ତ ସମ୍ପର୍କିତ ବ୍ୟକ୍ତିତ୍ୱଠୁ ଉର୍ଦ୍ଧ୍ୱରେ ରଖି ଆସିଛି । ସନାତନ ବୟସରେ ମୋଠୁ ପ୍ରାୟ ଦଶବର୍ଷ ସାନ । ଖୁବ୍ ନିକଟରେ ସ୍ନାତକ ଡ଼ିଗ୍ରୀ ପାଇବା ପରେ ସେ ଚାକିରୀ ଯୋଗାଡ଼ରେ ବ୍ୟସ୍ତ ରହୁଥିଲା । ଖୁବ୍ ବୁଦ୍ଧିମାନ, ଭଦ୍ର, ମିତଭାଷୀ । ମୋ ସହିତ ତାର ସମ୍ପର୍କ ଖୁବ୍ ନିବିଡ଼ । ଯେ କୌଣସି ସମସ୍ୟା ନେଇ ସେ ମୋର ସାହଚର୍ଯ୍ୟ ଲୋଡ଼େ ଏବଂ କୁଣ୍ଠାହୀନ ଭାବେ ମୁଁ ମୋର ଅଧିକାଂଶ ସମୟ ତା ପାଇଁ ଖର୍ଚ୍ଚ କରି ପକାଏ ।

ଏତେ ଦିନର ସମ୍ପର୍କ ଭିତରେ ଅଥଚ ମୁଁ ଜାଣି ପାରିଲିନି ସନାତନ ତାର ଏକମାତ୍ର ହୃଦୟ କୌଣସି ଏକ ଝିଅ ପାଖରେ ବନ୍ଧା ପକାଇ ଦେଇ ନିଜେ ନିସ୍ୱ ହେଇଯାଇଛି !

ଆଜି ନ ହେଲେ ବି ଆଉ କିଛି ବର୍ଷ ପରେ ସନାତନ ନିଶ୍ଚୟ ବାହା ହେଇଥାନ୍ତା ଓ ଠିକ୍ ସବୁ ମଣିଷଙ୍କ ପରି ଘର, ପିଲାଙ୍କ ଅଝଟ, ବଗିଚାର ଫୁଲ ଆଉ କିଛି ପ୍ରେମ କଳହ ନେଇ ବ୍ୟସ୍ତ ରହିଥାନ୍ତା । କିନ୍ତୁ ନିଜ ଭିତରର ଅଭାବକୁ ସେ ବେଶିଦିନ ଚାପି ରଖି ପାରିଲାନି ଏବଂ ସୁଯୋଗ ଦେଖି ସେଇ ଅଭାବନୀୟ ଭାବର କ୍ଷୀର ଉତୁରି ପଡ଼ିଲା ତାର ଏକାନ୍ତ ଗୋପନୀୟ ମାନସ ପାତ୍ରରୁ । ଅତଏବ ଚାକିରୀରୁ ବରଖାସ୍ତ ହୋଇ ବସିଥିବା ବଡ଼ଭାଇ, କର୍ତ୍ତବ୍ୟର ତାଡ଼ନାରେ କୁର୍ମ ପାଲଟି ଯାଇଥିବା ପିତା ଅଥବା ଯନ୍ତ୍ରଣାର ଡଅଁରରେ ଭାସୁଥିବା ରୋଗୀଣା ମାଆ, କାହାରି କଥାକୁ ସେ ବିଚାରକୁ ନେଲା ନାହିଁ । ଏପରିକି ସୌଜନ୍ୟ ରକ୍ଷା କରି ମୋ ପାଖକୁ ପତ୍ର ଖଣ୍ଡିଏ ବି ଦେଲା ନାହିଁ ।

ଗାଁରେ ଏ ସମ୍ପର୍କରେ ସାଧାରଣ ଟୀକା ଟିପ୍‌ପଣୀ ସଂଗ୍ରହ କରି ବୁଝିନେଲି ତାର ସାମ୍ପ୍ରତିକ ଠିକଣା ସମ୍ପର୍କରେ । ଠିକଣାଟା ଜାଣିବା ପରେ ହିଁ ମୋର ସନାତନ ପ୍ରତି ରାଗ ଦ୍ୱିଗୁଣିତ ହୋଇ ଯାଇଥିଲା । ତାର କାରଣ, ସେ ମୋଠାରୁ ଏତେ କମ୍ ଦୂରରେ ଥାଇ ବି କୌଣସି ସମ୍ପର୍କ ରଖି ନଥିଲା । ହୁଏତ ରଖିବାକୁ ଇଚ୍ଛା କରିନଥିଲା । ଏଇଟା ତାର ହୁଏତ ଏକ ପାଖିଆ ଅଭିମାନ । ସମଗ୍ର ପାରିବାରିକ ସମ୍ପର୍କ ତୁଟାଇ ଦେଇ ସେ ତାର ନୂଆକରି ଚାକିରୀ କରୁଥିବା ସ୍ତ୍ରୀ ସହ ଦେଓମାଳି ଘାଟୀର ପୂର୍ବରେ ରହୁଥିଲା । ସନାତନକୁ ଠାବ କରିବାକୁ ଆଜି ତେଣୁ ମୁଁ ମନସ୍ଥ କରି ପଶ୍ଚିମରୁ ପୂର୍ବାଭିମୁଖୀ ହୋଇଛି । ଘାଟୀ ବ ବୁଛି ଓ ଘାଟୀକୁ ଘେରି ରହିଥିବା ସମ୍ଭ୍ରାନ୍ତ ସବୁଜିମାକୁ ସଲାମ କରୁଛି । ହଠାତ୍ ଜୀବନ ସହ ଏଇମିତି ଯାତ୍ରା କରୁକରୁ ମୋର ମନେହେଲା ଏଇ ପାହାଡ଼ ଉପରେ ଥିବା ସମସ୍ତ ଜଙ୍ଗଲ, ଗଛମାନଙ୍କର ପତ୍ରରୁ ଠପ୍ ଠପ୍ ଝରି ପଡୁଥିବା ବର୍ଷା ସବୁ ଯେମିତି ଏକାକାର ହୋଇ ପକ୍ଷ ନେଇଛନ୍ତି ସନାତନର ନବ ବିବାହିତା ପତ୍ନୀର ମଥା ସିନ୍ଦୂର ପାଇଁ । ବେଶ୍ ରୋମାଞ୍ଚକର ପରିବେଶ ।

ଜୀବନର ଆଭିମୁଖ୍ୟ କିନ୍ତୁ ଅଲଗା ।

/

ସେ ଆଜି ସାବିତ୍ରୀକୁ ମନା କରିଦେବ ସଫା ସଫା, ଆଉ ଆଗକୁ ବଢ଼ିବା ଦରକାର ନାହିଁ ।

ଏମିତି ଏକ ନିଷ୍ପତ୍ତିରେ ପହଞ୍ଚି ସାରିଥିଲା ଜୀବନ । ଆଜି ସକାଳ ସାଢ଼େ ଦଶଟାରେ ବିଭୂରଞ୍ଜନଙ୍କୁ ଭେଟିବା ପରେ । ବିଭୂରଞ୍ଜନ ଯିଏ କିଛି ଘଣ୍ଟା ପୂର୍ବରୁ ମୋର ଉପରିସ୍ଥ ହାକିମ ଥିଲେ ଏବଂ ସମ୍ପ୍ରତି ଚାକିରୀରୁ ଇସ୍ତଫା ଦେଇ ଅନ୍ୟତ୍ର ଯିବାକୁ ମନସ୍ଥ କରିଛନ୍ତି, ତାଙ୍କର ବିଦାୟ ଅବସରରେ ଜୀବନ କଟ୍‌ସି ଭିଜିଟ୍ ଦେଲା ବେଳେ ହିଁ ସାବିତ୍ରୀ ପ୍ରତି ବିମୁଖ ହୋଇଯାଇଥିଲା ।

ପ୍ରକାଶ ଥାଉକି, ବିଭୂରଞ୍ଜନ କେବଳ ମୋର ଉପରିସ୍ଥ ହାକିମ ଭାବେ ସୁନାମ ଅର୍ଜନ କରି ନଥିଲେ, ଜଣେ ଭଲ ଜ୍ୟୋର୍ତିବିଦ୍ ହିସାବରେ ତାଙ୍କର ମଧ୍ୟ କିଛି ବାହାଦୂରୀ ଥିଲା । ଅଗତ୍ୟା ବିଭିନ୍ନ ଆଲୋଚନା ପ୍ରସଙ୍ଗରେ ମୁଁ ଜୀବନର କୋଷ୍ଠୀ ଚଳନ ସମ୍ପର୍କରେ ପ୍ରଶ୍ନ କରିଥିଲି ଏବଂ ଏପରି ଏକ ଅପ୍ରତ୍ୟାଶିତ ଘଟଣାରେ ଜୀବନ ଆଶ୍ଚର୍ଯ୍ୟ ହେଇଯାଇ ଥିଲେ ବି ନିଜ ଜନ୍ମତାରିଖ, ମାସ ଓ ମସିହା କହିବା ଛଡ଼ା ଉପାୟନ୍ତର ନଥିଲା । ମୂଳକଥା ହେଲା, ଏସବୁ ପ୍ରତି ଜୀବନର ଆଦୌ ବିଶ୍ୱାସ ନଥିଲା ।

ମାତ୍ର ବିଭୂରଞ୍ଜନଙ୍କ କାଉଁରୀ ଜ୍ୟୋତିଃବିଜ୍ଞାନରେ ହଠାତ୍ ସ୍ତମ୍ଭୀଭୂତ ହୋଇଗଲା ଜୀବନ । ତାଙ୍କର ପ୍ରତିଟି କଥାରେ ସେ ସମ୍ମତି ସୂଚନା ଦେଉଥିଲା । ବିଭୂରଞ୍ଜନଙ୍କ ପ୍ରତିଟି ବାକ୍ୟରେ ରହିଥିବା ପ୍ରଚ୍ଛନ୍ନ ସତ୍ୟକୁ ସେ ନିଜ ଭିତରେ ପରଖି ନେଉଥିଲା ଏବଂ ଭବିଷ୍ୟତର କର୍ମପନ୍ଥା ଲାଗି ଯୋଜନା ପ୍ରସ୍ତୁତି କରୁଥିଲା । ଅନ୍ତରର ଗଭୀରତମ କଷଟି ପଥରରେ ସେ ପରଖି ନେଲା ଯେ, ରୋମା ହିଁ କେବଳ ଅସଲି, ଖାଣ୍ଟି ଚଉଦ କ୍ୟାରେଟ । ଆଉ ସାବିତ୍ରୀ ନକଲି, ଉପରଟା ଯାହା ଚିକ୍ ଚିକ୍ । ଏଥର ତାକୁ ଜଗତ ରୋମାମୟ ଦେଖାଯାଇଥିଲା ।

ସେଇଠୁ ସିଧା ଆମେ ସ୍କୁଟରରେ କେବଳ ଘୁରୁଛୁ ଏବଂ ଘୁରୁଘୁରୁ ଦେଓଘାଟୀର ଆର ପାର୍ଶ୍ୱରେ ସେଇ ଛୋଟ ଜନବସତିରେ ଥିବା ସାବିତ୍ରୀ ଘରକୁ ଚାଲିଛୁ ।

ଘାଟୀ ଉପରେ ହିଁ ଅସରାଏ କଷିକରି ମେଘ ବର୍ଷିଗଲା । ତଥାପି ଆମର ସେଥିପ୍ରତି ନିଘା ନଥିଲା । ସାବିତ୍ରୀ ଘରେ ପହଞ୍ଚିଲା ବେଳକୁ ଅପରାହ୍ନ ଅତିକ୍ରାନ୍ତ ହେବାକୁ ଆଉ ଅଳ୍ପ ସମୟ ବାକି । ଆକାଶ ତଥାପି ଦାନବୀର ପରି ଅକୁଣ୍ଠ ଭାବେ ଜଳଦାନ କରି ଚାଲିଥିଲା ପୁରାଣର କୌଣସି ସମ୍ଭ୍ରାନ୍ତ ରାଜାଙ୍କ ପରି । ଆମେ ସେତେବେଳକୁ ଜୁଡୁବୁଡୁ ଓଦା । ଜୀବନ ଶୀତରେ ଥରୁଛି । ଥରିଲା ହାତରେ ଏଥର ସେ କଲିଂବେଲର ବୋତାମରେ ଚାପ ଦେଲା ।

ଚାକର କବାଟ ଖୋଲିଲା । ଖୋଲୁଖୋଲୁ ଚମକି ପଡ଼ି ଜିଭ କାମୁଡ଼ି ଦେଇ ସମ୍ଭ୍ରମତା ରକ୍ଷା କରି ଭିତରକୁ ଚାଲିଗଲା । ସେତେବେଳେ ସାବିତ୍ରୀର ମାଆ ବେଡ୍‌ରୁମ୍‌ରେ ଥିଲେ । ଖଟ ଉପରେ ଗଡ଼ପଡ଼ ହେଉ ହେଉ ରବିବାର ଟି.ଭି. ଉପଭୋଗ କରୁଥିଲେ । ବାପା କୌଣସି ମିଟିଂ ନେଇ କ୍ଲବକୁ ଯାଇଥିଲେ । ଆଉ ସାବିତ୍ରୀ ?

ଷ୍ଟଡ଼ି-କମ୍-ବେଡ୍‌ରୁମ୍‌ରେ ସାବିତ୍ରୀ ରିଆଜ୍ କରୁଥିଲା । ସେ କଣ୍ଠସ୍ୱରର କିଛିଟା ଟୁକୁଡ଼ା ମୋ କାନରେ ବାଜିଲା । ଆମକୁ ଏଇ ଅବସ୍ଥାରେ ଦେଖି ସାବିତ୍ରୀର ମାଆ

ଅଭିଭାବକତ୍ୱର ଖାତିରରେ ଆକଟିଲେ : ଫୋନ୍ କରି ଦେଇଥିଲେ ମୁଁ ଗାଡ଼ି ପଠେଇ ଦେଇଥାନ୍ତି... ଏମିତି ବର୍ଷାରେ...।"

:-ଗୋଟେ ଜରୁରୀ କାମ ନେଇ ଆସିବାକୁ ପଡ଼ିଲା ହଠାତ୍ ।" ଜୀବନ ସଫେଇ ଦବା ଭଙ୍ଗୀରେ ଏଥର ବୟାନ କଲା । ମୁଁ ଚୁପ ରହିଲି ଆଦ୍ୟରୁ ପ୍ରାନ୍ତ ପର୍ଯ୍ୟନ୍ତ ।

ସେ ଏଥର ତାଙ୍କର ଡ୍ରଇଁ ରୁମ୍‌ରୁ ବେଡ୍ ରୁମ୍‌କୁ ଡ଼ାକିନେଲେ । ସାର୍ଟପ୍ୟାଣ୍ଟ ବଦଳାଇ ଦେବାକୁ ବାଧ୍ୟ କଲେ ବି ଆମେ ତାହା କଲୁନାହିଁ । କାରଣ ସନ୍ଧ୍ୟା ପୂର୍ବରୁ ଆମକୁ ଫେରି ଯିବାର ଥିଲା ପରିଚିତ ସହରର ପେଟ ଭିତରକୁ ।

କଫି ଆସିଲା, ଗରମ ଗରମ । ନିଜେ ବନେଇଥିଲା ସାବିତ୍ରୀ, ଅଥଚ ଚାକର ହାତରେ ପଠେଇଦେଲା । ସାବିତ୍ରୀର ମାଆ ଖଟ ଉପରେ ବସି କଫିରେ ଓଠ ରଖୁ ରଖୁ ଜୀବନର କୁଶଳ ଜିଜ୍ଞାସା କଲେ । ମୁଁ ଟିଭିର ଆଗାମୀ କାର୍ଯ୍ୟକ୍ରମ ପ୍ରତି ଧ୍ୟାନ ଦେଲି । କେବଳ ଏତିକି ବୁଝିପାରୁଥିଲି, ଜୀବନ ମସ୍ତବଡ଼ ଏକ ଭାକୁଡ଼ ମାଛ ହେଇଥୋପ ଗିଳି ପକେଇଛି ଆଉ ସୂତାଟା ଯାଇ ସାବିତ୍ରୀର ମାଆଙ୍କ ହାତରେ । ଜୀବନ ଖୁବ୍ ଆନନ୍ଦରେ ନିଜ ମର୍ଜିରେ ଖେଳୁଛି ଅଥଚ ବୁଝିପାରୁନି ତାକୁ କେହି ଜଣେ ଖେଳଉଛି ବୋଲି ।

ସେକେଣ୍ଡ ରାଉଣ୍ଡ କଫି ହେଲା ବେଳକୁ ମୁଁ ଟିକେ ଚେଙ୍ଗା ହେଇଗଲି । କଥା ପ୍ରସଙ୍ଗରେ ମୋର ଆସିବାର ଉଦ୍ଦେଶ୍ୟ ସାବିତ୍ରୀର ମାଆଙ୍କୁ ଜଣେଇ ଦେଲା ଜୀବନ ।

ତାପରେ ଚାଲିଲା ଖୋଜାଖୋଜି, ପଚରାଉଚରା-କିଏ ଦେଖିଛ କି, ଶୁଣିଛ କି, ଜାଣିଛ କି-ର ଅନନ୍ତ ପ୍ରଶ୍ନବାଚୀ । ସତ କହିବାକୁ ଗଲେ ଗାଁରୁ ସନାତନର ଠିକଣା ଆଣିବାକୁ ମୁଁ ଭୁଲି ନଥିଲି ଆଦୌ । ବରଂ ଇଚ୍ଛା ନଥିଲା । ଏପରି ଏକ ଛୋଟ ସହରରେ ସନାତନକୁ ଖୋଜିନେବା ମୋ ପାଇଁ କଷ୍ଟକର ହେବ ନାହିଁ ବୋଲି ଧାରଣା ଥିଲା । ଏବେ ସେ ଧାରଣାର ବରଫ ତରଳିବାରେ ଲାଗିଛି ଦ୍ରୁତ ଭାବରେ ।

ଏବେ ସନାତନର ଠିକଣା କଣ ?

ସମସ୍ତେ ବିବ୍ରତ । ସାବିତ୍ରୀର ମାଆ, କ୍ଲବରୁ ଫେରି ଆସିଥିବା ସାବିତ୍ରୀର ବାପା, ତାଙ୍କ ଚାକର ଓ ସର୍ବୋପରି ସାବିତ୍ରୀ । ଚାରିଆଡ଼କୁ ଟେଲିଫୋନ୍, ଲୋକପଠା ସତ୍ତ୍ୱେ ବି ସନାତନ ଭଳି ବେକାର ଯୁବକର ଠିକଣା କାହିଁକି କାହା ପାଖରେ ରହିବ ?

ବାହାରେ ବର୍ଷା କୁଟୁଛି ଝର ଝର ହୋଇ । ପଦାକୁ ବାହାରିବା କଷ୍ଟ । ସାବିତ୍ରୀର ମାଆ ବାଧ୍ୟ କରୁଛନ୍ତି ଏମିତିକା ପାଗରେ ନ ଯିବାକୁ । ଅଳି କରୁଛନ୍ତି ରାତିଟା ବିତେଇ ଦେବାକୁ ତାଙ୍କ ଘରେ ।

:-ରବିବାରଟାରେ ଯାଇ ଏବେ କଣ କରିବ ? ଆଜି ଟିଭିରେ ଭଲ ଛବିଟେ ଅଛି, ସକାଳୁ ସକାଳୁ ଉଠି ଚାଲିଯିବ ସିଧା ଅଫିସକୁ ।"

ତାଙ୍କର ସମସ୍ତ ଅନୁନୟ କେବଳ ଜୀବନ ପ୍ରତି । ସାବିତ୍ରୀ ବି ମନେ ମନେ ଦୁର୍ଗ ତୋଳିଥିବା ଆକାଶରେ । ଛୋଟ ଛୋଟ ସ୍ୱପ୍ନ ଦେଖୁଥିବ । ନୀଳରଙ୍ଗର ସ୍ୱପ୍ନ, ଠିକ୍ ଦେଓଘାଟୀ ପାହାଡ଼ର ନୀଳିମା ପରି ।

ସନାତନକୁ ଖୋଜି ନ ପାଇବାର ବିଫଳତା କାହାକୁ ଘାରି ନଥିଲା, କେବଳ ମତେ ଛାଡ଼ି ଦେଲେ । ଜୀବନ ବି ବିରକ୍ତ ହେଲା ମୋ ଉପରେ ।

:-ବିନା ଠିକଣାରେ ଜଣକୁ ଖୋଜି ପାଇବା ଏ ସହରରେ ଏତେ ସହଜ ନୁହେଁ ।" ସେ କହିଲା ।

ନିଜର ବ୍ୟକ୍ତିତ୍ୱ ଜାହିର କରିବା ପାଇଁ ସନାତନ ପାଖରେ କଣ ଅଛି ? କେବଳ ଜଣେ ପ୍ରେମିକ, ଏବେ ଗୃହସ୍ଥ ଅଥଚ ବେକାର । ଯାଯାବରର ଠିକଣା କଣ ?

ସାବିତ୍ରୀର ମାଆଙ୍କର ପ୍ରତିଟି ଅନୁରୋଧକୁ ବେଖାତିର କରିବାକୁ ଆରମ୍ଭ କରିଥିଲା ଜୀବନ । କହି ନ ପାରିଲେ ବି ତାର ସେ ଭାଷା ବୁଝି ହେଉଥିଲା ।

କାହିଁକି ମୁଁ ତମ ଘରେ ରାତ୍ରୀ ଯାପନ କରିବି ? କୋଉ ଦାୟରେ, ତମେ ମୋର କିଏ ? କାହିଁକି ତମେ ମତେ ଟ୍ରାପ କରିବାକୁ ବସିଛ ? ମୋ ସହିତ ତମର ସମ୍ପର୍କ କଣ ? ଅନେକଙ୍କ ଭଳି ସେ ବି ମୋ ସଂସ୍ଥାର ଜଣେ ଶିଳ୍ପୀ, ସେ ଗୀତ ଗାଏ ମୁଁ ଆପ୍ଲୁଭ କଲେ । ତା ବୋଲି ସେ ଯାହା କରିବ, ମୁ ସାବାସ କହିବା ପିଲା ନୁହେଁ ? ତମେ ଜାଣ ମୁଁ ରୋମାକୁ ଭଲପାଏ ନିବିଡ଼ ଭାବରେ, ଅଥଚ ତମର ଏ କପଟ ସୁହାଗ ମୋ ପ୍ରତି କାହିଁକି ? ମୁ ତମମାନଙ୍କୁ ଘୃଣା କରେ... ସାବିତ୍ରୀକୁ ବି ଘୃଣା କରେ ।

ସେତେବେଳକୁ ଜୀବନ ମୂକ ପାଲଟି ଯାଇଥିଲା ଓ ଝିପି ଝିପି ବର୍ଷାରେ ଯେତେବେଳେ ପୁଣି ଆମେ ସ୍କୁଟରରେ ଷ୍ଟାର୍ଟ ଦେଲୁ, ମୁଁ ଲକ୍ଷ୍ୟ କଲି ଜୀବନର ସାରା ମୁହଁ ଝାଳରେ ଗମ୍ ଗମ୍ କରୁଛି । ତଥାପି ଆମେ ପଛକୁ ନ ଚାହିଁ ଫେରି ଆସିଲୁ ଆମ ସହରକୁ ।

ଆସିଲା ବେଳେ ରାସ୍ତା ତଳକୁ ନଇଁ ନଇଁ ଆସିଥିଲା ମେଘ । କୁହୁଡ଼ିର ପର୍ଦ୍ଦା ଭଳି ଚାରିଆଡ଼େ ଅବଶୋଷର ଆସ୍ତରଣ । କେବଳ ମେଘ କାଟି କାଟି ଆମେ ଚାଲିଛୁ । ସର୍ପିଳ ରାସ୍ତା । ରାସ୍ତା ଶେଷରେ ଆସିଲା ଆମର ପରିଚିତ ଦେଓଘାଟୀ ।

କିଛି ମୁହୂର୍ତ୍ତର ବ୍ୟବଧାନରେ ଏତେବଡ଼ ଅଘଟଣ ଘଟିଗଲା - ମୁଁ ନିଜକୁ ବିଶ୍ୱାସ କରି ପାରିଲିନି । ସାରା ପାହାଡ଼ଟା ନଣ୍ଡା ହୋଇ ହତଶ୍ରୀ ଦେଖାଯାଉଛି ।

ଗୋଟିଏ ହେଲେ ବି ଗଛ କି ପତ୍ର ନାହିଁ । ସେ ସବୁଜିମା ଯେମିତି ଥିଲା ଅନେକ ଦିନ ତଳର ଗୋଟେ ଭୁଲି ଆସୁଥିବା ସ୍ୱପ୍ନ ଭଳି । ନା ଥିଲେ ବଣର ଫୁଲ ନା ତାଙ୍କର ମହକ । ଶୁଣାଯାଉ ନ ଥିଲା ସେଠି ପକ୍ଷୀର କଳରବ ।

ସାରା ପାହାଡ଼ଟା ଲାଗୁଥିଲା କୌଣସି ବିଧବା ନାରୀ ପରି । ଏଥର ନିଜକୁ ନିଜେ ମୁଁ ପ୍ରଶ୍ନ କେବଳ ପଚାରି ଚାଲିଲି -

କୁଆଡ଼େ ଗଲା ଏତେ ସବୁ ଗଛ ?
କେବେ ମିଳିବ ସନାତନର ଠିକଣା ?
କାହିଁକି ଜୀବନ ମୂକ ପାଲଟି ଗଲା ?
ଅଥଚ ପ୍ରତ୍ରସହରରେ ପହଞ୍ଚି ଦେଖିଲି ଏଠି ଟୋପାଏ ବି ବର୍ଷା ନାହିଁ ।

# ଦେବୋତ୍ତମ ମଧୁବ୍ରତା ସଂବାଦ

ପ୍ରେମିକା ମଧୁବ୍ରତାର ମୃତ୍ୟୁପରେ ଦେବୋତ୍ତମ ଯୋଗୀ ହୋଇଗଲା ! ଯୋଗୀ ହେବାଲାଗି ଅନେକଦିନରୁ ତାର ଅଭିଳାଷ ଥିଲା । ଏବେ ତାହା ପୂର୍ଣ୍ଣ ହେଲା ।

ବିଶ୍ୱବିଦ୍ୟାଳୟ ଜୀବନରେ ଯୋଗୀ ହେବାର କାମନାକରି ସେ ଅନେକ କିଛି କରିଥିଲା । ବହୁ ପୁସ୍ତକର ଆଶ୍ରୟ ନେଇଥିଲା - ଖାସ୍ ଏଇ ମଧୁବ୍ରତା ଲାଗି । ମଧୁବ୍ରତା, ତ୍ରିଭୁବନର ମାତା ।

ତ୍ରିଭୁବନକୁ ସେତେବେଳେ ଆହୁରି ବହୁ ଯୋଗୀ ଆସୁଥିଲେ ଅତି ସନ୍ତର୍ପଣରେ ଅନ୍ଧକାରର ସୁଡ଼ଙ୍ଗ ଭିତର ଦେଇ । ସେଇ କୋଠରୀ : ଗୁମ୍ଫା ଭିତରେ ଅନେକ ବେଦ, ଅନେକ ଉପନିଷଦର ଅବତାରଣା । ଅନୁଭବହିଁ ଥିଲା ସେମାନଙ୍କର ବେଦ । ଅନୁଭବକୁ ରୂପ ପ୍ରଦାନ କରିବା ଲାଗି ଶବ୍ଦକଳ୍ପର ରୋଷଣୀ ଚାଲୁଥିଲା । ଅବଲୀନାକ୍ରମେ କୌଣସି ଏକ ସିଦ୍ଧାନ୍ତରେ ପହଁଚି ଯିବା ହିଁ ଥିଲା ପ୍ରସ୍ତୁତିର ଶେଷମାତ୍ର ।

ଗୁମ୍ଫା ବାହାରେ ନୀରବତା ଓ ଅନ୍ଧକାରର ଚୁକ୍ତି ସ୍ୱାକ୍ଷରିତ । ଗୁମ୍ଫା ଭିତରେ କ୍ଷୀଣ ଆଲୋକ । ପ୍ରଚୁର ଗଞ୍ଜେଇ ଧୂଆଁ । ପିସ୍ତଲ ସବୁବେଳେ ଲୋଡ୍ । ଯୋଗୀମାନେ ଯେ କୌଣସି ମୂହୂର୍ତ୍ତରେ ଗୁଳି ଫୁଟାଇ ପାରନ୍ତି । ଯୋଗୀମାନଙ୍କ ଅପେକ୍ଷାରେ ଏଇ କୁଚ୍ଛ ସାଧନାକୁ ବରି ନେଇଛନ୍ତି ଦେବୋତ୍ତମ ଓ ତାପରି ଅନ୍ୟ ଯୋଗୀମାନେ । ଟାଣି ଟାଣି ଆକୃତା ମାକୃତା ହେଇ ହେଇଯାନ୍ତି ସମସ୍ତେ । ଯେଗୀମାନଙ୍କର କୁଚ୍ଛ ସାଧନା ଶେଷ ହେଲାବେଳକୁ ତ୍ରିଭୁବନର ମାତାମାନେ ଆସନ୍ତି ।

ଦେବୋତ୍ତମ ଭାବେ ମଧୁବ୍ରତା ଆସୁଛି କୌଣସି ଏକ ଦ୍ରୁତଗାମୀ ଗାଡ଼ିରେ । ଗାଡ଼ି ନଅଟି ଷ୍ଟେସନରେ ଅଟକି ଯାଉଛି । ଅନ୍ୟ କୌଣସିଠାରେ ନୁହେଁ ।

ସବୁ ଷ୍ଟେସନ୍‌ରେ ସମ୍ବର୍ଦ୍ଧନାର ବିପୁଳ ଆୟୋଜନ । ବିଭିନ୍ନ ଭାବରେ ।

ପ୍ରଥମ ଷ୍ଟେସନ : ମୂଳାଧାର
(ଚାରିଗୋଟି ପାଖୁଡ଼ା ଯୁକ୍ତ ଫୁଲର ଉପହାର)
ଦ୍ୱିତୀୟ ଷ୍ଟେସନ : ସ୍ୱାଧିଷ୍ଠାନ
(ଛଅଗୋଟି ପାଖୁଡ଼ା ଯୁକ୍ତ ଫୁଲର ଉପହାର)
ତୃତୀୟ ଷ୍ଟେସନ : ମଣିପୁର
(ଦଶଗୋଟି ପାଖୁଡ଼ା ଯୁକ୍ତ ଫୁଲର ଉପହାର)
ଚତୁର୍ଥ ଷ୍ଟେସନ : ଅନାହତ
(ବାରଗୋଟି ପାଖୁଡ଼ା ଯୁକ୍ତ ଫୁଲର ଉପହାର)
ପଞ୍ଚମ ଷ୍ଟେସନ : ବିଶୁଦ୍ଧ
(ଷୋହଳଗୋଟି ପାଖୁଡ଼ା ଯୁକ୍ତ ଫୁଲର ଉପହାର)
ଷଷ୍ଠ ଷ୍ଟେସନ : ଆଜ୍ଞା
(ଛତିଶଗୋଟି ପାଖୁଡ଼ା ଯୁକ୍ତ ଫୁଲର ଉପହାର)
ସପ୍ତମ ଷ୍ଟେସନ : ଲଳନା
(ଚଉଷଠୀଗୋଟି ପାଖୁଡ଼ା ଯୁକ୍ତ ଫୁଲର ଉପହାର)
ଅଷ୍ଟମ ଷ୍ଟେସନ : ଗୁରୁ
(ଏକଶହଗୋଟି ପାଖୁଡ଼ା ଯୁକ୍ତ ଫୁଲର ଉପହାର)
ନବମ ଷ୍ଟେସନ : ସହସ୍ରାର
(ଏକ ହଜାର ଗୋଟି ପାଖୁଡ଼ା ଯୁକ୍ତ ଫୁଲର ଉପହାର)

ସମ୍ବର୍ଦ୍ଧନାର ଶେଷ । ବିଦାୟ ନେବାକୁ ହିଁ ପଡ଼ିବ । ଗାଡ଼ି ଫେରିଯିବାକୁ କିଛି ସମୟ ଲାଗେ । ହୁଇସିଲ୍ ମାରି ଗାଡ଼ି ପୁଣି ଗଡ଼ି ଚାଲେ ପୂର୍ବସ୍ଥାନକୁ । ଦେବୋତ୍ତମ ସହ ଅନ୍ୟ ଯୋଗୀମାନେ ପ୍ରକୃତିସ୍ଥ ହୋଇ ଉଠନ୍ତି । ସ୍ୱପ୍ନରୁ ବାସ୍ତବତାକୁ ଫେରିଆସନ୍ତି । ଚିରପରିଚିତ ଗାଡ଼ି କଥା ହିଁ ମନେ ପକାନ୍ତି । ଗାଡ଼ିର ନାମ କୁଣ୍ଡଳିନୀ ଏକ୍‌ସପ୍ରେସ୍ ।

ମଧୁବ୍ରତା ସହ ଦେବୋତ୍ତମର ପ୍ରଥମ ଭେଟ ଯେବେ ହୋଇଥିଲା, ମଧୁବ୍ରତା କହିଥିଲା: ଆମର ପୁଅଟେ ଦରକାର ଯାର ନାଆଁ ମୁ ରଖିବି ସ୍ୱର୍ଗୋତ୍ତମ ।" ଦେବୋତ୍ତମ ହସି ହସି ବେଦମ୍ ହୋଇଗଲା ।

ଏବେ ପ୍ରେମିକା ମଧୁବ୍ରତାର ମୃତ୍ୟୁ ହୋଇଛି । ଦେବୋତ୍ତମ ପୁତ୍ର ଜନ୍ମର ଆକାଙ୍କ୍ଷା ମରି ଯାଇଛି । ଦେବୋତ୍ତମ ଦୀର୍ଘନିଶ୍ୱାସ ଛାଡ଼ିଲା । ତ୍ରିଭୁବନର ଧୂଆଁଳିଆ ସ୍ମୃତି ମନେ ପଡ଼ୁଛି । ସେଇ ଏକ ନିଶ୍ଚିତ ସମୟରେ ମଧୁବ୍ରତା ଆସୁଛି । ଧୂଆଁରେ ହଜିଯାଉଛନ୍ତି ଉଭୟେ- ଏକ ଆଶ୍ଚର୍ଯ୍ୟ ଧୂଆଁଳିଆ ପଥରେ ଯାତ୍ରା । ରେଳ ଧୂଆଁର ରୂପକଳ୍ପକୁ ସ୍ମରଣ କରାଯାଇପାରେ।

ରେଳ ଧାରଣା ଉପରେ ଗାଡ଼ି ଚାଲିଛି ।

ପ୍ରଥମ ଧାରଣ : ଇଡ଼ା
ଦ୍ୱିତୀୟ ଧାରଣା : ପିଙ୍ଗଳା
ତୃତୀୟ ଧାରଣ : ସୁଷୁମ୍ନା

ପ୍ରଥମ ଧାରଣା ବାମରେ, ଦ୍ୱିତୀୟ ଧାରଣା ଡାହାଣରେ ଓ ମଝିରେ : ତୃତୀୟ ଧାରଣା ପ୍ରକୃତରେ ଯାହା ଉପରେ ହିଁ ଗାଡ଼ି ଚାଲେ । ସେଇଠାରୁ ହିଁ ବୁଝିହୁଏ ଗାଡ଼ିର ଗନ୍ତବ୍ୟସ୍ଥଳ ସଂପର୍କରେ । ଅନେକ ଧାରଣା ତ ରହିଛି । ଗୋଟି ଗୋଟି ହୋଇ ତିନି ଲକ୍ଷ ପର୍ଯ୍ୟନ୍ତ । ସେମାନଙ୍କ ମଧ୍ୟରୁ ଚଉଦଗୋଟି ଧାରଣା ଏକ ନିର୍ଦ୍ଦିଷ୍ଟ ଜଙ୍କସନ୍‌ର ସ୍ରଷ୍ଟା ବୋଲି ଗର୍ବ କରିବାର କୌଣସି ତ୍ରୁଟି ହୁଏତ ନ ଥାଇ ପାରେ ।

ଗାଡ଼ିର ଶକ୍ତି କଳନା କରିବା ଅସମ୍ଭବ । ସାଧାରଣ ଅବସ୍ଥାରେ ଗାଡ଼ିଟି ସେମିତି ଜାକିଜୁକି ହେଇ ପଡ଼ିଥାଏ । ସାପ ପରି । ପାଟି ଖୋଲେ ନାହିଁ । ଖୋଲିବା ବି ସହଜ ନୁହେଁ । ଯଦି ଭୁଲ୍ କ୍ରମେ ଗାଡ଼ିଟି ତୃତୀୟ ଧାରଣା ନ ଦେଇ ଅନ୍ୟ ଆଡ଼େ ଚାଲିଯାଏ, ହୁଏତ ନିଶ୍ଚିତ ବିପଦକୁ ହିଁ ଆମନ୍ତ୍ରଣ କରିବାକୁ ହୁଏ । ଗୋଡ଼ହାତ ଅଥବା ଯେ କୌଣସି ଅବୟବ ଅକାମୀ ହୋଇଯାଇପାରେ । ଏପରିକି ମୃତ୍ୟୁ ବି ।

ମଧୁବ୍ରତା ନିଜେ ସେଦିନ ଆଶ୍ଚର୍ଯ୍ୟ କରିଦେଇଥିଲା ଦେବୋତ୍ତମକୁ । ନିଜେ ଇ ଯୋଗିନୀ ବେଶରେ ଆକର୍ଷି, ନିଜେ ଆକର୍ଷିତ ହୋଇ ଯାଇଥିଲା । ଭେଦ କରିବାକୁ ଚାହିଁଥିଲା ଚକ୍ରବ୍ୟୂହ । ପ୍ରତି ସ୍ଥାନରେ ଜାଗ୍ରତ ପ୍ରହରୀମାନଙ୍କ ସହ ସାକ୍ଷାତ୍ କରିବାକୁ ପଡ଼ୁଥିଲା ତାକୁ ।

ମଧୁବ୍ରତା ଚମକି ପଡ଼ିଥିଲା ପ୍ରଥମ ପ୍ରହରୀ ସହ ସାକ୍ଷାତ୍ କାଳରେ । ପୀତବର୍ଣ୍ଣ ପ୍ରହରୀ । ବେଶ୍ ପାରଙ୍ଗମ । କିନ୍ତୁ ମଧୁବ୍ରତା ନିଜକୁ ସମ୍ଭାଳି ନେଲା ଓ ନିଜର ଦୁର୍ବଳତାକୁ କଇଁଛର ଖୋଳପା ଭିତରେ ମୋଡ଼ି ମାଡ଼ି ରଖିବାକୁ ବେଶୀ ପସନ୍ଦ କଲା । ନିଜ ଭିତରେ

ସାହସ ସଂଚୟ କଲା । ସତେ ଯେପରି ଅନେକ ବର୍ଷ ପରେ ଗୋଟେ ପୁରୁଣା ଶତ୍ରୁକୁ ଶାନ୍ତ କରାଇବା ଉଦ୍ଦେଶ୍ୟରେ ଅପୂର୍ବ କୌଶଳଟିଏ ପ୍ରୟୋଗ କଲା : ଅହିଂସା । ଶତ୍ରୁକୁ ଘନ ଘନ ଚୁମ୍ବନ କଲା । ରଣ ହୁଙ୍କାର ଦେବା ପାଇଁ ଶତ୍ରୁ ଯେପରି ସତତ ପ୍ରସ୍ତୁତ । ଅତ ୍ୟଧିକ କାମ, କ୍ରୋଧ, ଲୋଭ ଓ ମୋହର ଜାଲରେ ପଡ଼ି ଶତ୍ରୁ ଅବଶ ହୋଇ ପଡ଼ିଲା । ଆଗେଇ ଚାଲିଲା ମଧୁବ୍ରତା ଏଥର ।

ଅଜଗର ପରି ପଡ଼ି ରହିଥିବା ଏଇ ଶ୍ୱେତାଙ୍ଗ ଦ୍ୱିତୀୟ ପ୍ରହରୀ : ଅଧୋଦରକୁ ଅତିକ୍ରମିବା ଲାଗି ବେଶୀ ସମୟ ଲାଗି ନ ଥିଲା ମଧୁବ୍ରତାକୁ । ସାମ୍ନାରେ ତୃତୀୟ ପ୍ରହରୀର କୁହାଟ ସେ ଶୁଣି ପାରୁଥିଲା । ପଛରେ ଜଳ ଭଉଁରୀର ଉତ୍ତେଜନାହୀନ ଆମନ୍ତ୍ରଣ । କଣ କରିବ ସେ ?

ତୃତୀୟ ପ୍ରହରୀ : ନାଭି । ଏଠି ଖାଲି ନିଆଁର ସମୁଦ୍ର । ଟିକେ ହତଭମ୍ବ ହୋଇଗଲା । କଣ କରିବା ଉଚିତ କିଛି ଠିକ୍ କରିପାରିଲାନି । ଏଠାରେ ଥିଲା ଅନ୍ଧକାରର ନିବିଡ଼ତା । ଏକାକୀତ୍ୱର ଘନ ସାନ୍ଦ୍ରତା । ମରୁଭୂମିରେ ବଞ୍ଚିବାର ସାହାରା ଖୋଜୁଥିଲା ମଧୁବ୍ରତା । ଆଖିରୁ ଥପ୍ ଥପ୍ ଲୁହ ଖସି ପଡୁଥିଲା ଭଳି ଜଣା ପଡୁଥିଲା । ପ୍ରକୃତରେ କିନ୍ତୁ ତାହା ଘଟୁ ନଥିଲା । ସତେ ଯେମିତି ନିଆଁ ଝୁଲ ଖସୁଥିଲା ଆକାଶରୁ । ନିଶବ୍ଦରେ ମଧୁବ୍ରତା ମନ୍ତ୍ର ଉଚ୍ଚାରଣ କରି ଘନ ଘନ ଚୁମ୍ବିଗଲା ତୃତୀୟ ପ୍ରହରୀକୁ । ନିଷ୍ଫଳ । ମରୁଭୂମିରେ ଠାଏ ଠାଏ କଣ୍ଟା ସିଜୁ ଓ ଉତ୍ତପ୍ତ ବାଲିର ପାହାଡ଼ । ମଧୁବ୍ରତା ଚତୁର୍ଥ ପ୍ରହରୀ ପାଖକୁ ଆଗେଇଗଲା ଝଡ଼ ଭଳି ।

ଚତୁର୍ଥ ପ୍ରହରୀ : ବକ୍ଷ । ମରୁଭୂମିର ଓଏସିସ୍ । ଉପରେ ନୀଳ ଆକାଶର ଚାନ୍ଦୁଆ । ନିଶ୍ୱାସ ମାରିବାକୁ କିଛି ଥଣ୍ଡା ପବନ ମିଳିପାରେ ଏଠି । ମଧୁବ୍ରତାର କୋହ କିଛିଟା ପ୍ରଶମିତ ହେଲା । ଏଇଟା ହିଁ ନିରାପଦ ଆଶ୍ରୟସ୍ଥଳ । ସନ୍ଧି ସ୍ଥାପନ କଲା । ଚୁକ୍ତି ସ୍ୱାକ୍ଷରିତ ହେଲା ଆଗାମୀ ମୁହୂର୍ତ୍ତମାନଙ୍କ ପାଇଁ । ମଧୁବ୍ରତା ଆଖି ଭିତରେ ନିଦ । ନିଦ ଭିତରେ ଖଜ୍‌ବଜ୍ ସ୍ୱପ୍ନ । ବିଭିନ୍ନ ରଂଗର ସ୍ୱପ୍ନ ତାକୁ ଅଥୟ କଲେ । ଆଖି ଖୋଲିବା ମାତ୍ରେ ମଧୁବ୍ରତା ନିଜକୁ ଆବିଷ୍କାର କଲା ପଞ୍ଚମ ପ୍ରହରୀ ସାମ୍ନାରେ ।

ପଞ୍ଚମ ପ୍ରହରୀ : ଗଳା । ଭାଦ୍ରବ ମାସର ଛାୟାପଥରେ ଟିକି ଟିକି ତାରାର ରୋଷଣୀ । ତାକୁ ଜାବୋଡ଼ି ଧରିଥିଲା ଅନେକ ସମୟ ଯାଏ ପ୍ରତିଶୋଧ ନେବା ଛଳରେ । ମଧୁବ୍ରତା ପ୍ରତିବାଦ କଲା ନାହିଁ । ମୁକୁଳିଯିବାକୁ ଚେଷ୍ଟା କଲା ନାହିଁ । ନୀରବ ରହିଲା ।

ଅହିଂସାର ଶେଷ ଅସ୍ତ୍ରଟିକି ପ୍ରୟୋଗ କଲା ଏଥର । ନିଜେ ଇ କୁତ୍ କୁତ୍ ଅନୁଭବ କରୁଥିଲା ।

ମଧୁବ୍ରତା ନିଜେ ଇ ଜାଣି ନ ଥିଲା କଣ କରିବ ଷଷ୍ଠ ପ୍ରହରୀ : କପାଳ ପାଖରେ ? ଆଜ୍ଞାର ରଂଗ କଣ ? ସେ କଣ ସତରେ ଜିତିଯିବ ଏଇ ଯୁଦ୍ଧରେ ? ଅବଶ୍ୟ ଯୁଦ୍ଧରେ ହାରିବା ଅଥବା ଜିତିବା ତା ପାଇଁ ଗୁରୁତ୍ୱପୂର୍ଣ୍ଣ ବ୍ୟାପାର ନୁହେଁ । ଯୁଦ୍ଧ ସମୟର ନିୟମ କାନୁନ୍ ସବୁ ପାଳନ କରିବା ବଡ଼କଥା । ଏଇଥିପାଇଁ ଶତ୍ରୁର ସ୍ୱେଦବିନ୍ଦୁମାନଙ୍କୁ ଚାଟିବାକୁ ଲାଗିଲା ସେ । ବୃଥା ଆସ୍ଫାଳନକୁ ଅବଜ୍ଞା କରିବାକୁ ପଛେଇଲାନି । ତା ପରେ ଆଗେଇଗଲା ସପ୍ତମ ଓ ଶେଷ ପ୍ରହରୀ : ମସ୍ତକ' ପାଖକୁ । ସେଠି କିଛି ରଂଗ ନାହିଁ । ଏକ ନୀରବ ନିଶ୍ଚିହ୍ନ ନୀରବତା । ସୃଜନ, ପାଳନ ଓ ସଂହାରର ଏକତ୍ରୀକରଣ ଏଇଠାରେ ହିଁ ଘଟିଛି, ଯେଉଁଠାରୁ ମଧୁବ୍ରତା ଚାହେଁ ମୁକ୍ତି । ଦେହରୁ ଦେହାତୀତ ହୋଇଯିବା ଯିମିତି ତାର ଏକମାତ୍ର କାମନା । ପଦ୍ମପତ୍ରରେ ଢଳଢଳ ଜୀବନ । ମଧୁବ୍ରତା ମୁକ୍ତିପାଇଁ ଅସ୍ଥିର । ଚଞ୍ଚଳ ।

ମଧୁବ୍ରତା ମୁକ୍ତି ପାଇଲା ! ଅଥଚ ନିଜେ ଇ ଜାଣି ନଥିଲା ଶେଷ ପର୍ଯ୍ୟନ୍ତ ଯେ ସେ ଜିତିଯିବ ବୋଲି । ତେବେ ସେ କଣ ଜିତିଯାଇଛି ? ଟପି ଯାଇଛି ଶେଷ ପ୍ରହରୀ : ଲଳନା, ଗୁରୁ ଓ ସହସ୍ରାରମାନଙ୍କୁ ? ଶେଷ ପ୍ରହରୀକୁ ଅତିକ୍ରମିଲା ସମୟରେ ସେ ଭାବମଗ୍ନ ହୋଇଗଲା । ପୁନର୍ବାର ଚକ୍ରବ୍ୟୂହ ଅତିକ୍ରମ କରିବାର ମନ୍ତ୍ର ବିସ୍ମରଣ ହୋଇଥିଲା । ମଧୁବ୍ରତାର ଶତ୍ରୁମାନେ ହୁଏତ ଜାଣିପାରିଥିଲେ ତାର ଦୁର୍ବଳତା । ପ୍ରହରୀମାନେ ଆଗେଇ ଆସୁଥିଲେ ତାରିଆଡ଼କୁ । ଯେ ଯାହାର ଲକ୍ଷ୍ୟ ପୂରଣ କରିବା ଉଦ୍ଦେଶ୍ୟରେ ସମୁଦ୍ର ଭଳି ଗର୍ଜି ଉଠୁଥିଲେ । ମଧୁବ୍ରତା ନିରୂପାୟ । ସେମାନେ ସମସ୍ତେ ଝାମ୍ପି ପଡ଼ିବା ଲାଗି ଉଦ୍ୟତ ହେଉଥିଲେ । ମଧୁବ୍ରତା କିଛି କହିବ କହିବ ହେଉଥିଲା । କଣ କହିବ କିଛି ଭାବି ପାରୁ ନଥିଲା । କେଉଁ ଭାବେ କହିବ କିଛି ସ୍ଥିର କରିପାରୁନଥିଲା ।

ବୃନ୍ତଗନ୍ଧିରେ କହିବ, ନା
ଉତ୍କଳିକାରେ କହିବ, ନା
ମୁକ୍ତକରେ କହିବ, ନା
ଚୂର୍ଣ୍ଣକରେ କହିବ ?

ମଧୁବ୍ରତା କିଛି କହିବ କହିବ ହେଉଥିଲା । କିନ୍ତୁ କହିପାରିଲାନି । ପ୍ରେମିକା ମଧୁବ୍ରତାର ମୃତ୍ୟୁ ହେଇଛି ଅନେକ ଦିନରୁ । ସ୍ତ୍ରୀ କେବେ ପ୍ରେମିକା ହୋଇପାରେନି । ପ୍ରେମିକାର ଭାଷା ସ୍ୱତନ୍ତ୍ର !

ଦେବୋତ୍ତମର ଦୀର୍ଘଶ୍ୱାସ ଓ ଉଠୁଥିବା ପଡୁଥିବା ଛାତି ଭିତରେ ଉପଯୁକ୍ତ ଯତିପାତ ରକ୍ଷା କରାଯାଉଥିବା ଭଳି ମନେ ହେଉଥାଏ । ପୁରକ କୁମ୍ଭକ ରେଚକ କୁମ୍ଭକ ପୁରକ କୁମ୍ଭକ ରେଚକ କୁମ୍ଭକ ପୁରକ କୁମ୍ଭକ ରେଚକ...। ତୋର ପ୍ରେମିକ ଅଛି କି ଯାର ନୌକାରେ ତୁ ଯାଆସ କରୁଛୁ ? ଆହା, ଏଇ ଯେ ପୋଖରୀ ଭିତରେ ତୁ ନାଚି କୁଦି ବୁଲୁଛୁ, କଅଁଳ ମୃଣାଳ ଖାଉଛୁ । ଏଇ ଦୃଶ୍ୟ କି ସୁନ୍ଦର ! ମଧୁବ୍ରତା, ସତ କହୁଛି ତୋର ଆନ୍ତରିକ ପ୍ରେମ ପ୍ରଦାନ ବିନା ମୁଁ ପ୍ରାଣ ରଖିବି ନାହିଁ ।

ମଧୁବ୍ରତା ଚଉଷଠୀ ପାଖୁଡ଼ାଯୁକ୍ତ ପଦ୍ମବନରେ ନୃତ୍ୟ କରୁଥିବା କଥା ଭାବିବାମାତ୍ରେ ଅନ୍ୟମନସ୍କ ହୋଇଗଲା ଦେବୋତ୍ତମ । ସେ ହୁଏତ ଜାଣିଥିଲା ଏଥିପାଇଁ ନଅଟି ପୁଷ୍ପ ଆବଶ୍ୟକ, ମାତ୍ର ନଅଟି ପୁଷ୍ପରେ ଅତିଥି ଚର୍ଚ୍ଚା କରିବାକୁ ପଡ଼େ :

ପ୍ରଥମ ପୁଷ୍ପ : ଆଲିଙ୍ଗନ
ଦ୍ୱିତୀୟ ପୁଷ୍ପ : ଚୁମ୍ବନ
ତୃତୀୟ ପୁଷ୍ପ : କୁଚମର୍ଦ୍ଦନ
ଚତୁର୍ଥ ପୁଷ୍ପ : ଦନ୍ତାଘାତ
ପଞ୍ଚମ ପୁଷ୍ପ : ସ୍ପର୍ଶ
ଷଷ୍ଠ ପୁଷ୍ପ : ଯୋନି ପ୍ରସାରଣ
ସପ୍ତମ ପୁଷ୍ପ : ଲିଙ୍ଗ ସଂସ୍ଥାପନ
ଅଷ୍ଟମ ପୁଷ୍ପ : ଅନୁପ୍ରବେଶ
ନବମ ପୁଷ୍ପ : ପ୍ରତିଷ୍ଠାନ

ଏବେ ଋତୁମୋଚନର ବେଳ ମଧୁବ୍ରତାର । ଏଇ ହିଁ ପ୍ରତୀକ୍ଷିତ ମୁହୂର୍ତ୍ତ, ଦେବୋତ୍ତମ ଭାବିଲା । ପରମ ଶିବଙ୍କ ସହ ସଂଯୋଗ ସ୍ଥାପନର ସେତୁଟିକୁ ଦୃଢ଼ କରିବାକୁ ପଡ଼ିବ ।

ମଧୁବ୍ରତା ସମ୍ମତି ଜଣାଇଲା । ତା ଛଡ଼ା ଉପାୟ ନଥିଲା ଯିମିତି । ଦେବୋତ୍ତମ ସ୍ୱାଗତକଲା ହାତରେ ନଅଟିଫୁଲର ମାଳାଟିଏ ଧରି । କୋଠରୀଭିତରେ କ୍ଷୀଣ ଆଲୋକ । ଦେବୋତ୍ତମ ପ୍ରଣାମ ଉଦ୍ଦେଶ୍ୟରେ ମଧୁବ୍ରତାର ପାଦସ୍ପର୍ଶ କଲା । ମଧୁବ୍ରତା ଯଥାସମ୍ଭବ ମୁହଁରେ ଅଭୟମୁଦ୍ରା କରି ଆଶିର୍ବାଦ କଲା ଦେବୋତ୍ତମକୁ । ଓଠ ଫାଙ୍କରୁ ଖସି ପଡ଼ିଲା ଆଶିର୍ବାଦର ଗଙ୍ଗା । ପରିପୂର୍ଣ୍ଣ କଲା ଦେବୋତ୍ତମକୁ । ଦେବୋତ୍ତମ ମୁଣ୍ଡରେ ବୋଝ ବୋହି ଆଗକୁ ଚାଲିଲା । ସ୍ତିମିତ ଆଲୋକର ଲଜ୍ଜାକୁ ଭ୍ରୁକ୍ଷେପ ନ କରି ଭୂପତିତ ହେଲା ଶାଢୀ, ସାୟା, ବ୍ଲାଉଜ ଓ ବକ୍ଷ ବନ୍ଧନୀ । ଭୂପତିତ ହେଲା ଲୁଗା, ପଞ୍ଜାବୀ ଓ କଉପୁନି ।

ଦେବୋତ୍ତମକୁ ଲାଗିଛି : ଏଇ ଶରୀରଟା ଗୋଟେ ବୃକ୍ଷ ସଦୃଶ । ଏଇ ବୃକ୍ଷର ଶାଖା ସଂଖ୍ୟା ମାତ୍ର ପାଞ୍ଚ । ବୃକ୍ଷ ଉପରେ ବସିଛନ୍ତି ନାନା କିସମର ପକ୍ଷୀ । ବେଳେବେଳେ ଶରୀର ଭେଦି ଉଡ଼ି ଯାଉଛନ୍ତି ଯେ ଫେରି ଆସିବାର କୌଣସି ସମ୍ଭାବନା ନାହିଁ ଯେମିତି । ସମ୍ଭାବନା ନାଇଁ ଯିମିତି ପ୍ରେମିକା ମଧୁବ୍ରତାର ଫେରିବା । ଭାବନାର ଜଙ୍ଗଲ ଭିତରେ ଘୁରୁଛି ଦେବୋତ୍ତମ ଶବରଟିଏ ହୋଇ । ସମ୍ମୁଖରେ ତାର ପାହାଡ଼ । ପାହାଡ଼ ଉପରେ ବସି ରହିଛି ଶବର ବାଳିକା । ତାର ଆଭରଣ ମୟୂରପୁଛ । କଣ୍ଠରେ ଗୁଞ୍ଜମାଳ । ପ୍ରଣୟ ପ୍ରାର୍ଥୀ ଦେବୋତ୍ତମର ମନରେ ଦ୍ୱନ୍ଦ୍ୱ ଦେଖି ମଧୁବ୍ରତା ତାକୁ କହିଲା : ରେ ପାଗଳ ଦେବୋତ୍ତମ ! କାହିଁକି ମିଛଟାରେ ତୁ ଏସବୁ ଗୋଳମାଳରେ ପଶି ବ୍ୟସ୍ତ ହେଉଛୁ ? ମହାସୁଖର ରାସ୍ତା ଏକା ମୁଁ - ସହଜ ସୁନ୍ଦରୀ । ଏହା ଶୁଣିବା ମାତ୍ରେ ଦେବୋତ୍ତମର ଚେତନା ଫେରି ଆସିଲା । ତାର ପ୍ରାଣରେ ପ୍ରୀତିର ଝରଣାଟିଏ ଝରିଗଲା । ସେଇ ନିରସ ପାର୍ବତ୍ୟ ଭୂମି ତାର ପ୍ରେମବନ୍ୟାରେ ଉବୁଟୁବୁ ହେବାକୁ ଲାଗିଲା । ବୃକ୍ଷରାଜିରେ ନାନାଜାତିର ପୁଷ୍ପ ବିକଶିତ ହେଲା । ଶାଖା ପ୍ରଶାଖା ଆକାଶ ଛୁଇଁଲା । ସେତେବେଳେ ମଧୁବ୍ରତା ସେହି ସୁନ୍ଦର ବନ ଭୂମିରେ, କର୍ଣ୍ଣରେ କୁଣ୍ଡଳ ଓ ବଜ୍ରାଦି ଭୂଷିତା ହୋଇ ଏକାକୀ ବୁଲୁଥାଏ । ପ୍ରେମିକ ଦେବୋତ୍ତମ ମନର ଦ୍ୱନ୍ଦ୍ୱ ଦୂର କରି ତାକୁ ସଂଗୀନି ରୂପେ ଗ୍ରହଣ କଲା । ଦେବୋତ୍ତମର ଭାବନାରେ ଗାର ପଡ଼ିଲା ।

ଓ ପ୍ରେମିକା ମଧୁବ୍ରତାର ମୃତ୍ୟୁହେଲା ତତ୍‌କ୍ଷଣାତ୍ ।

ଓ ପ୍ରେମିକ ଦେବୋତ୍ତମର ମୃତ୍ୟୁହେଲା ତତ୍‌କ୍ଷଣାତ୍ ।

ଦେବୋତ୍ତମ ନିଜ ମନ ମୁତାବକ ଯୋଗିନୀଟିଏ ଯୋଗାଡ଼ କରିପାରିଛି । ସେତିକିରେ ହିଁ ତାର ଆନନ୍ଦ । ସେଇ ଅବର୍ଣ୍ଣନୀୟ ଆନନ୍ଦର ମାୟାରେ ଛନ୍ଦି ହେଇ ଦେବୋତ୍ତମ କହିବାକୁ ଚାହୁଁଥିଲା : ମଧୁବ୍ରତା ! ତୋର ପ୍ରେମିକ ଦେବୋତ୍ତମର ମନକୁ କେବଳ ଛୁଇଁ ଛୁଇଁ ଯାଉଛୁ ସତ, ହେଲେ ନିବିଡ଼ ପ୍ରେମ ଦେଇ ପାରୁନାହୁଁ । ମଧୁବ୍ରତା ! ତୋ ବନ୍ଧନରେ ବାନ୍ଧିହୋଇ ରହିବାକୁ ମୋର କୌଣସି ଆପତ୍ତି ନାହିଁ । ଦେଖ୍ ! ମୁଁ ଜଣେ ଲଜ୍ଜାଦି ବିରହିତ ଉଲଗ୍ନ କାପାଳିକ ଯୋଗୀ । ମୁଁ ତୋରି ସ୍ତରର ଲୋକ । ମୋର ଜାତ୍ୟାଭିମାନ ନାହିଁ ଅଥବା ଅନ୍ୟମାନଙ୍କ ପରି ସାମୟିକ କାମ-ସୁଖ-ଲୋଭ-ଲାଳସାରେ ତୋର ପ୍ରଣୟ ପ୍ରାର୍ଥୀ ହେଉନି । ତୁ ମତେ ଏବେ ଏକ ଅନ୍ତରଙ୍ଗ ପ୍ରେମିକରୂପେ ଗ୍ରହଣ କର । ଚଉଷଠୀ ପାଖୁଡ଼ାଯୁକ୍ତ ପଦ୍ମ ଉପରେ ନୃତ୍ୟରତା ମଧୁବ୍ରତାକୁ ଦେବୋତ୍ତମ କହିଲା : ତୋର ଏଇ ପଦ୍ମବନରେ କ୍ରୀଡ଼ାରତ ମୂର୍ତ୍ତିଟି ବଡ଼ ରମଣୀୟ ! ସତ କରି କହତ ତୁ କିପରି ପୋଖରୀ

ମଝିରେ ସେଇ ପଦ୍ମବନକୁ ଯାଉଛୁ ? ଆଉ କଣ କିଏ ବୃକ୍ଷଚ୍ୟୁତ ବୃନ୍ତ ସାହାଯ୍ୟରେ ଦେବୋତ୍ତମ ମଧୁବ୍ରତାର କପାଳରେ ସିନ୍ଦୂରର ଏକ ତ୍ରିଭୁଜ ଅଙ୍କନ କରିବାକୁ ଲାଗିଲା ନିଜକୁ କୌଣସି ଆଧୁନିକ ଶିଳ୍ପୀମନେକରି ? ତାପରେ ବିଭିନ୍ନ ମୁଦ୍ରାରେ ମଧୁବ୍ରତାକୁ ସ୍ପର୍ଶ କରିବାକୁ ଲାଗିଲା ଦେବୋତ୍ତମ । ପ୍ରଥମେ ନାଭି । ତାପରେ ଯୋନି । ଯୋନି ସଂଲଗ୍ନ ବାମ ଜଙ୍ଘ ଦେଇ ପାଦ ପର୍ଯ୍ୟନ୍ତ ଅନୁରୂପଭାବେ ।

ମଧୁବ୍ରତା ନିର୍ବିକାର ଚିତ୍ତରେ ଚାହିଁରହିଛି ଦେବୋତ୍ତମକୁ । ଦେବୋତ୍ତମ ମଧୁବ୍ରତାର ଲହୁଣୀ ସଦୃଶ କୋମଳ ତଥା ବର୍ତ୍ତୁଳ ବକ୍ଷୋଜ ଉପରେ ଚନ୍ଦନର ପ୍ରଲେପ ଦେଉଛି । ଫୁଲନାଗି କରୁଛି । ସୁବର୍ଣ୍ଣର ଶଙ୍ଖ ଦୁଇଟି କ୍ରମଶଃ କଠିନ ଲାଗୁଛି ଦେବୋତ୍ତମର ଆଙ୍ଗୁଳିକୁ । ମନେ ହେଉଛି ଏଇନେ ଯେମିତି ସୁବର୍ଣ୍ଣ-ଶଙ୍ଖର ଧ୍ୱନିରେ ସମଗ୍ର ବିଶ୍ୱର ତନ୍ଦ୍ରା ଅପସରି ଯିବ । ମହାଭାରତର ଦୁଃଶାସନ ବଧ ଉପାଖ୍ୟାନଟି ମନେପଡ଼ିଗଲା ଦେବୋତ୍ତମର :

ଆହୋ ଚଇତନ ଶ୍ରୀହରି କଲେ ପଞ୍ଚୁଜନ୍ୟ ଶଙ୍ଖଶବଦ
ଶତଶିଙ୍ଗ ଶତସିଙ୍ଗ ବୋଲି ଉଚ୍ଚେ କଲେ ସେହୁ ନାଦ
ତଳେ ପଡ଼ିଥିଲାକ ସେ ପାଣ୍ଡେବ ପଞ୍ଚାଣେ
ଶ୍ରୀକୃଷ୍ଣଙ୍କ ଶଙ୍ଖଧ୍ୱନି ତାର ସମ୍ଭାଇଲା ଶ୍ରବଣେ
ଶତଶିଙ୍ଗ ପର୍ବତକୁ ସୁମରଣା କଲା ଭୀମ
ଯେକ ଉତ୍ତର ଶତେସିଂଘର ହୋଇଲା ପ୍ରାକର୍ମ
ବ୍ରିକୋଦର ରୂପଧରି ଲେଉଟାଇ ମାଡ଼ି ବସି

ନୟନ ଛଟକେ ଭୀମା ମାଡ଼ି ବସିଲା ଆକ୍ରୋଶି

ଫୁଙ୍କି ଦବକି ସେଇ ପାଞ୍ଚଜନ୍ୟ ଶଙ୍ଖଟାକୁ, ଯାହାର ସ୍ୱର ଶୁଣି ମୂର୍ଚ୍ଛିତ ବି ଚେତନା ଫେରିପାଇବ ! କିନ୍ତୁ ? ଦେବୋତ୍ତମ ନିରୂପାୟ ।

ପ୍ରେମିକା ମଧୁବ୍ରତାର ମୃତ୍ୟୁପରେ ଦେବୋତ୍ତମ ଯୋଗୀ ଏବଂ ଯୋଗୀର ଉତ୍ତରସାଧିକା, ତା ସ୍ତ୍ରୀ ନୁହେଁ ।

# ବର୍ଜି

ଏମିତି ଗୋଟେ ଘଟଣା ଘଟି ଯିବ ବୋଲି ସେ କେବେ ଆଶାକରି ନଥିଲା । ଅନ୍ତତଃ ଏଇ କେଇଦିନ ହେଲା ସେତ ଘଟଣାଟିକୁ ପୂରାପୂରି ଭାବେ ପାଶୋରି ଦେଇଥିଲା କହିଲେ ଭୁଲ୍ ହେବ ନାହିଁ ।

ସେଇ ମୁହଁ, ହାବଭାବ କଥାବାର୍ତ୍ତା ସବୁକିଛି ତାର ଭାବନାକୁ ଓଲଟପାଲଟ କରି ଦେଉଥିଲା ଯେମିତି କାହିଁକି ? ଅନେକ ଦିନତଳେ ଘଟିଯାଇଥିବା ଅଘଟଣକୁ ମନେପକାଇ ଲାଭ ବା କଣ ? ମନେ ମନେ ଏଇଆ ଯୁକ୍ତିବାଢି ପ୍ରାୟତଃ ଘଟଣାଗୁଡ଼ିକୁ ଭୁଲିଯାଇଥିଲା ସେ । ସବୁ ଅସୁବିଧା ସତ୍ତ୍ୱେ ନିଜକୁ ଖାପଖୁଆଇ ଚଳେଇବା ତାର ଧାତୁରେ ଚଳିଗଲାଣି ।

ଏହି ଅଘଟଣଟି ଘଟିବାର କେତେଦିନ ପର୍ଯ୍ୟନ୍ତ ତାକୁ ନିଦ ହେଉନଥିଲା । ହେଉନଥିଲା ଭୋକ କି ଶୋଷ । ସାଇପଡ଼ିଶାର ଅନ୍ୟମାନେ ତାକୁ ଭୁଲ୍ ବୁଝୁଥିଲେ । ସେମାନଙ୍କ ଭୁଲ୍ ବୁଝିବାର କାରଣ ଏବେବି ସେ ଖୋଜି ପାଏନା । କାହିଁକି ଏମିତି ଘଟେ ?

ଏମିତି କେତେଆଡୁ କେତେକଥା ଭାବୁ ଭାବୁ ଘରେ ଆସି ପହଞ୍ଚି ସାରିଥିଲା ସେ । ଲଥ୍ କରି ବସିପଡ଼ିଲା ପିଣ୍ଡା ଉପରେ । ସେମିତି ଆଉଥରେ ଉଠିପାରିବାର ଦ ମ୍ଭତକ ହଜେଇ ସାରିଛି । ଏଇ କିଛି ସମୟ ଆଗରୁ ଅସରାଏ ଭଲ ବର୍ଷା ହୋଇଯାଇଛି । ପାଣିଖରା ମାରୁଛି । ଗୁଳୁଗୁଳିଯୋଗୁଁ ଦିହର ମାଉଁସସିଝି ଯିବାପରି ଲାଗୁଛି । ବାହାର ଆଉ ଭିତର ଭିତରେ ଯେମିତି କିଛି ଫରକ ନାହିଁ । ଗରମ ।

କଣ ଭାବିଲା କେଜାଣି ଘରଭିତରକୁ ଜୋରରେ ଧସିଗଲା ଯୋଗିଆ । ଅଳ୍ପକେ ରକ୍ଷା ପାଇଗଲା । ଚାଳ ଭିତରୁ ଗୋଟେ ବତା ବାହାରି ଆସିଛି କିଛି ବାଟ ଯାଏ । ଅଣହୁସିଆର ହେଲେ ମୁଣ୍ଡରେ ଆଘାତ ଲାଗିବାର ସମ୍ଭାବନା ।

ଅଟକିଗଲା ଏଥର ସେ ଘରଭିତରେ । ଘର ଭିତର ସାରା ଅନ୍ଧାରର ଅଦଉଚି ବଢ଼ି ଚାଲିଛି ଯେପରି ଅନେକ ଯୁଗରୁ । ଠାଏ ଠାଏ ଝାପ୍‌ସା ଆଲୁଅର ମଉଛବ । ପୁଣି ଅନ୍ଧାର । ପୁଣି ଆଲୁଅ !! ଏମିତି ।

ଘରର ଚାରିଆଡ଼କୁ ସେ ଆଖି ବୁଲେଇଲା ଅତି ସନ୍ତର୍ପଣରେ । ବିଶେଷ କିଛି ପରିବର୍ତ୍ତନ ଘଟିଲା ନାହିଁ ତା ମନଭିତରେ । ହଠାତ୍ ଗୋଟେ କୋଣରେ ତାର ଆଖି ଅଟକିଗଲା  ଆଉ ଆଗକୁ ଯାଇ ପାରିଲାନି । ଚାଳ ଉଲୁରି ଯାଇଥିଲା ପବନରେ । ଗୁଞ୍ଜାଦେବାକୁ ଭୁଲି ଯାଇଛି । ସେଉଠୁ ଆଲୁଅର ଗୋଟେ ଧାର ଲମ୍ବି ଆସିଥିଲା ଘରର ନିର୍ଦ୍ଦିଷ୍ଟ କୋଣ ପର୍ଯ୍ୟନ୍ତ ଯେଉଁଠୁ ଚେଷ୍ଟା କରି ବି ସେ ତାର ଆକ୍ଷି ଫେରାଇ ନେଇ ପାରୁନଥିଲା ।

ଘରର ସେଇ କୋଣଟିରେ ବିଡ଼ାଏ ଶୁଖିଲା ପାଖୁଡ଼ି ଓ ଗୋଟେ ଘୋଡ଼ା ବ୍ୟତୀତ ଆଉ ଅଧିକ କିଛି ଥିଲା ଭଳି ଜଣାପଡୁନଥିଲା । ଅନେକ ଦିନରୁ ମାଟିର ସେଇ ଘୋଡ଼ାଟା ସେଇ କୋଣରେ ପଡ଼ି ରହିଛି ଯେମିତି ଅଭିମାନରେ । ଅଥଚ କି ଅର୍ଥ ଅଛି ଏଠି ଅଭିମାନର?

ଘୋଡ଼ା ଉପରେ ଠିଆ ହୋଇ ସେ ଝିଣ୍ଟିଆଠାରୁ ଆରମ୍ଭ କରି ଓଲାଓଲି ସବୁ କରୁଥିଲା । ଅନ୍ୟକାହାରି ନୁହଁ, ନିଜ ବରଜରେ । ସେ ଦିନ ଗୁଡ଼ାକ ଥିଲା ନିଆରା ।

ଟପାକ ଭିତରେ ତା ବରଜ ଥିଲା ସରସ । କାହାର ଅଙ୍ଗାରି ମାରିଯାଉଥିଲା ତ କାହାର ପୁଣି ଜବା ଧରୁଥିଲା । କିଏ ବେତ ଧରି ପୋଲାଙ୍ଗ ପିଡ଼ିଆ ପାଇଁ ଏଦୋକାନରୁ ସେ ଦୋକାନ ବୁଲୁଥିଲା ଅଥଚ ସେ ଥିଲା ନିଧଡ଼କି ।

ନିଜ ପୁଅ ଭଳି ସେ ଦେଖିଥିଲା ବରଜଟିକୁ । ଠିକ୍ ସମୟରେ ଗୋଡ଼ାପଡ଼ା, ମାଟିପାଣି, ପିଡ଼ିଆ ଆଦି ଦେଇ ସେ ହେପାଜତରେ ରଖିଥିଲା । ଫନ୍ଦାଟିକୁ ବିଗାଡ଼ି ଦେଲେ ହୁଏତ ସଜାଡ଼ିବା ତା ପକ୍ଷରେ ସମ୍ଭବ ହେବ ନାହିଁ । ଏୟାଭାବି, ଦିନ ନାହିଁ ରାତି ନାହିଁ ସେଇ ବରଜ ଭିତରେ ପଡ଼ି ରହୁଥିଲା ସେ । ମୋଟାମୋଟି କହିବାକୁ ଗଲେ ସେଇ ବରଜଟିକୁ ନେଇ ତାର ସ୍ୱପ୍ନ ଗଜୁରି ଉଠୁଥିଲା, ଡ଼ାଳପତ୍ର ମେଲାଉଥିଲା ।

ଘରସାରା ଅଧା ଛାଇ ଅଧା ଆଲୁଅର ଖେଳଭିତରେ ଯୋଗିଆ କେତେକଣ ଭାବି ଯାଉଛି - ପାଗଳାଙ୍କ ପରି । ପାଟିରୁ ଅସ୍ପଷ୍ଟ କେତେଟା ଶବ୍ଦବାହାରୁ ବାହାରୁ ଅଟକି ଯାଉଛନ୍ତି । ମନୋଭାବ ପୂରାପୂରି ପ୍ରକାଶ ପାଇପାରୁନାହିଁ । ସେଇ ଛାଇଆଲୁଅ ଭିତରେ ଗୋଟେ କୋଣକୁ ଢ଼େରାହୋଇ ଥୁଆ ହୋଇଥିବା ପାଖୁଡ଼ି ବିଡ଼ାଟା ସେ ବେଶ୍ ଦେଖିପାରୁଥିଲା । ଶୁଖି ଜାଳ ହୋଇ ଗଲାଣି । ଅନେକ ଦିନରୁ ସେମିତି ପଡ଼ି ରହିଛି ସେଠି । ଉପାୟ କଣ ଅଛି?

ଯୋଗିଆର ଅତୀତ, ବର୍ତ୍ତମାନ, ଆଉ ଭବିଷ୍ୟତ ସବୁକିଛି ପ୍ରାୟତଃ ଅମାବାସ୍ୟା ରାତ୍ରିର ମେଘୁଆ ଆକାଶ ପରି । ମଝିରେ ମଝିରେ ଆଖି ଝଲସାଇ ଦେଉଛି ବିଜୁଳି ଯାହା ।

ହେତୁ ପାଇଲା ଦିନୁ ବାପା ମାର ସ୍ନେହ କି ଶ୍ରଦ୍ଧା ପାଇନି । ପିଲାଟି ବେଳୁ ଦାଦି ପାଖରେ ମଣିଷ ହୋଇଚି । ତାପରେ ନିଜ ଗୋଡ଼ରେ ଠିଆ ହେବାର ଅଭିମାନ ତାକୁ କର୍ମଠ କରିଛି । ଅନ୍ୟମାନଙ୍କ ମନରେ ଈର୍ଷା ଆଣିବାର ଖୋରାକ ଦେଇଛି । ଶୈଶବ ପରେ କୈଶୋର, ତାପରେ ଯୌବନରେ ପାଦ ଦେବାପରେ, ଦାଦି ତା ବେକରେ କାଞ୍ଚନକୁ ବାନ୍ଧି ଦେଇ ଆଶ୍ୱସ୍ତ ହୋଇଛନ୍ତି । ଯୋଗିଆ ମଧ୍ୟ ଆଶ୍ୱସ୍ତ ହୋଇଛି । ସତେ ଯେମିତି ହଜିଯାଇଥିବା ଗୋଟେ ଦରବ ତାକୁ ମିଳିଯାଇଛି ।

ଏବେ ନିରାପଦ ମନେକରେ କାଞ୍ଚନ । କାଞ୍ଚନର ପଣତ ଉହାଡ଼ରେ ଯୋଗିଆ ତାର ଗ୍ଲାନି, ଅବସାଦକୁ ଲୁଚାଇ ରଖେ । ଲହୁ ଲୁହ ଏକାଠି କରେ । ଦୁହେଁ ସ୍ୱପ୍ନର ଗୁଡ଼ି ଉଡ଼ାନ୍ତି । ଗୁଡ଼ି ବଉଦର ପେଟ ଚିରି ଉପରକୁ ଉଠେ, ଖୁବ୍ ଉପରକୁ ।

ଏବେ ବରଜରୁ ବେଶ୍ ଦୁଇ ପଇସା ସଞ୍ଚିଛି ଯୋଗିଆ । କାଞ୍ଚନ ଘରକୁ ଆସିଲା ପରେ ତା ହାତରେ ତହବିଲ ଧରେଇ ଦେଇ ନିଜକୁ ଖାତକଟିଏ ବୋଲି ମନେ କରିଛି ସିଏ । ନିଜକୁ ସମର୍ପି ଦେବାରେ ଅହେତୁକ ଆନନ୍ଦ ତାର । ତାଛଡ଼ା କାଞ୍ଚନ ତ ଏଣିକି ଗୃହଲକ୍ଷ୍ମୀ ।

କାଞ୍ଚନ ବି ଯୋଗିଆର ସୁଖଦୁଃଖରେ ନିଜକୁ କମ୍ ଖରଚ କରିନାହିଁ । ଦିହରେ ଟିକିଏ ତାତି ଆସିଲେ, ତଣ୍ଟିଟିକେ ବସିଗଲେ, ନତୁବା ବରଜରେ ମାଟିପାଣି ବୋହି ବୋହି ଅଣ୍ଟା ଟିକେ ପରାସ ହୋଇଗଲେ ରାତିସାରା ଆଖି କଷା ନକରି ଯୋଗିଆର ସେବା କରୁଥାଏ ।

ଯେକୌଣସି ସୁଖୀପରିବାରଠୁ ସେମାନଙ୍କ ପରିବାର ଥିଲା ଅଧିକ ସୁଖମୟ ।

ଯୋଗିଆ ଏଇଠି ଅଟକିଗଲା । ଭାବିଲା ସମସ୍ତଙ୍କ ଖମାରରୁ ଦିନେନାଦିନେ ସଂଚିତ ସୁଖ ସରିଯାଏ । ଏବେ ଯୋଗିଆର ଦୁଃଖ ଯେକୌଣସି ଲୋକର ଦୁଃଖଠାରୁ ବେଶ୍ ଅଧିକ । କିନ୍ତୁ କାହିଁକି ଏପରି ଘଟେ ?

କାଞ୍ଚନ ତାର ସ୍ତ୍ରୀ । ଏବେ ପିଶାଚିନୀ । ଯୋଗିଆ ଭାବିଲା । ବିବାହ ପୂର୍ବରୁ ସେ ବେଶ୍ ଖୁସିରେ ଥିଲା । ମନଇଛା ବୁଲୁଥିଲା, ଖଟୁଥିଲା, ଶୋଉଥିଲା, ସ୍ୱପ୍ନ ବି ଦେଖୁଥିଲା । ମାତ୍ର ଏବେ ? ବିବାହ ପରେ ଯେପରି ସେ ଅଣନିଶ୍ୱାସୀ ହୋଇଯାଇଛି । ତାର ନିଜର ଇଛାବୋଲି କିଛି ନାହିଁ । ସୀମାବଦ୍ଧ । ପାଚେରୀ ଡ଼େଇଁବା ମନା, ନିୟମ ନ ମାନିଲେ ଗୋଡ଼ହାତ ଭାଙ୍ଗିବାର ସମ୍ଭାବନା ଖୁବ୍ ବେଶୀ ।

ଆଜିକାଲି କାଞ୍ଚନର ବ୍ୟବହାର ତାକୁ ଭଲଲାଗୁନାହିଁ । ତାର ସୁଆଗିଆ କଥାରେ କେମିତି ଗୋଟେ ଛଳନାର ରଙ୍ଗବୋଳା ହୋଇଛି । ତାର ଚାହାଣିରେ ଯେମିତି ସର୍ପ ଦଂଶନର ଜ୍ୱାଳା !

ବିବାହର ମାତ୍ର ଚାରୋଟି ବର୍ଷ ଭିତରେ ଏପରି ନାଟକୀୟ ପରିବର୍ତ୍ତନ ! ବାଃ ! ଜୀବନଟା ଗୋଟେ ନାଟକ ନୁହେଁ ତ କଣ ?

କାଞ୍ଚନ ପାଇଁ ଏସବୁ ଅପ୍ରତ୍ୟାଶିତ ହେଲେବି ଅପାଂକ୍ତେୟ ନୁହେଁ । ସେ ଜାଣେ ସୁଖର ଦିନଗୁଡ଼ାକ ସିଧା, ଦୁଃଖର ଦିନଗୁଡ଼ାକ ଅଙ୍କାବଙ୍କା । ସବୁବେଳେ ଏଇ ନିୟମ । ସୁଖି ପରିବାରମାନଙ୍କର ଧାରା ପ୍ରାୟତଃ ଗୋଟିଏ । ମାତ୍ର ଦୁଃଖୀ ପରିବାରମାନଙ୍କର ଧାରା ଭିନ୍ନ । ନିଜସ୍ୱ ।

ଏବେ ରୋଷେଇସାରି କାଞ୍ଚନ ସଂଜପହରରୁ ଅପେକ୍ଷାକରେ ତାର ସ୍ୱାମୀକୁ । ଦିନେ ଦିନେ ଯୋଗିଆ ଫେରେ ପାହାନ୍ତା ପହରକୁ । ପେଟ ଖରାପ ଅଛି ବୋଲି ସଫେଇ ବାଢି ଶୋଇଯାଏ । ବହୁ ସମୟତ ଫେରେନାହିଁ । କୁଆଡ଼େଯାଏ, କେବଳ ତାକୁଇ ଜଣା ।

ଏକଥା ସତ, ଦୁହେଁ ଉଡ଼ାଉଥିବା ଗୁଡ଼ିର ସୂତାଟା କୋଉଠି ଯେମିତି ଲାଗି ଅଡୁଆ ହୋଇଯାଇଛି । ଗୁଡ଼ି ଉପରକୁ ଉଠି ପାରୁନାହିଁ । ତଳକୁ ଓହ୍ଲାଇ ଆସୁନି । ଅଥଚ ଛଟପଟ ହେଉଛି । କିଏ ଜାଣେ କେତେବେଳେ କଣ ହୋଇଯିବ ?

ମଝିରେ ମଝିରେ ଦରକାର ନ ପଡ଼ିଲେ ଯୋଗିଆ କାଞ୍ଚନ ସହ ବିଶେଷ କଥାବାର୍ତ୍ତା କରେନାହିଁ । କାଞ୍ଚନ ବି କିଛିଗୋଟେ ଅତି ଦରକାର ଥିବାବେଳେ ଡ଼ରି ଡ଼ରି ତାକୁ ପଚାରୁଛି । ପଚାରିଲା ବେଳେ କଣ୍ଠ ଥରି ଉଠୁଛି । ସେ ଆଦୌ ଡରିଯାଇନାହିଁ ବୋଲି ନିଜକୁ ଯେତେ ସଜାଡ଼ି ନେଲେ ବି ଅଧିକ ମାତ୍ରାରେ ଧରା ପଡ଼ିଯାଉଛି ।

ତାର ଯେକୌଣସି କଥା ଶୁଣି ସରଳ ଉତ୍ତର ଦେଉନି ଯୋଗିଆ । ଖେଙ୍କାରି ଉଠୁଛି ।

ଏମିତି କିଛିଦିନ ଗଲା । ହଠାତ୍ ଦୁହେଁ ଅନୁଭବକଲେ ଯେତେଚେଷ୍ଟା କଲେ ବି ଗୁଡ଼ିଟି ଆଉ ଉପରକୁ ଯାଇପାରିବ ନାହିଁ । ବର୍ଷାଋତୁ ଉପଗତ । ବାଧ୍ୟହୋଇ ଗୁଡ଼ିଟିକୁ ପୃଥିବୀ ଆଡ଼କୁ ଫେରାଇଆଣିବାର ତୀବ୍ର ମାନସିକତା ସେମାନଙ୍କୁ କିଂକର୍ତ୍ତବ୍ୟବିମୂଢ଼ କରିଦେଲା । ଉପାୟହୀନ ହୋଇ ପରସ୍ପର ଲମ୍ବେଇ ଥିବା ସୂତାକୁ ଭିଡ଼ିବାରେ ବ୍ୟସ୍ତ ରହିଲେ ।

କାଞ୍ଚନର ଗୁଡ଼ିଟି ଶେଷରେ ମାଟିର ଆକର୍ଷଣକୁ ଏଡ଼ାଇ ପାରିଲା ନାହିଁ । ଅଥଚ ଯୋଗିଆର ଗୁଡ଼ି କାହିଁ କେତେଦୂର ଆଖି ପାଉନାହିଁ ଭାସି ଭାସି ଚାଲିଛି ।

ଯୋଗିଆ ଭାବିଚାଲିଛି, ଆକାଶ ପାତାଳ ।

ସେଦିନ ଶୁକ୍ରବାର । ହାଟବାରି । ସକାଳୁ ଉଠି ପଣେପାନ ତୋଡ଼ିଲା । ପୁଣି ନାଛିଲା । ବେଗି ଦଣ୍ଡିଆହାଟରେ ପହଞ୍ଚିବା ଅଗରୁ ପାନବୋଝଟା ନେଇ ଥୋଇଦେଲା । ମହୁମାଛି ପରି ବେପାରୀମାନେ ଦୌଡ଼ିଆସିଲେ । ତା ପାନଉପରେ ତ ସମସ୍ତଙ୍କର ଆଖି । ଅନ୍ୟମାନଙ୍କ ଭଳି ସେ ଏତେ ପେଞ୍ଚଜାଣିନି, କି ପନ୍ଦର ସତର କହିପାରେନ । ସେଇଥିପାଇଁ ବେପାରୀମାନେ ତାକୁ ଖାତିରି କରନ୍ତି । ତାକୁ ସମଝିଲାବାଲା ଦିପଇସା କାଟିଦେଲେ ବି ତାର ଦୁଃଖନଥାଏ ।

ସେଦିନ ସଅଳ ସଅଳ ତାର ପାନ କଟିଯାଇଥାଏ । ଟଙ୍କା ମିଳିବା ବେଳକୁ ବେଳ ଆଉରି ଘଡ଼ିଏ ବାକି । ସଉଦା ପତ୍ର ସାରି ଘରେ ପହଞ୍ଚି ସାରିଲାବେଳକୁ ମୁହଁ ସଂଜ । ପାନ ବେତାଟାକୁ ମୁଣ୍ଡରୁ ଓହ୍ଲାଇ ଦେଇ ଚୁପ୍‌ହୋଇ ବସିପଡ଼ିଲା ପିଣ୍ଡାଉପରେ । ଖଙ୍କାର ଖାଇମାରିଲା । ଏଇଟା ତାର "ଘରେ ପହଞ୍ଚି ଗଲି" ର ସାଙ୍କେତିକ ଧ୍ୱନି । ସଂକେତ ପାଇବା ମାତ୍ରେ କାଞ୍ଚନ ତା ପାଖକୁ ଆସେ । ସଉଦା ନିଏ । ଏଣୁତେଣୁ ପଚାରେ ଯାହାର କିଛି ଅର୍ଥ ଅଛି ବୋଲି ଯୋଗିଆ ଭାବିପାରେ ନାହିଁ ।

କିନ୍ତୁ କାଞ୍ଚନ ଆସିଲା ନାହିଁ । ଯୋଗିଆ ଅପେକ୍ଷା କଲା, ରାତିହେଲା । ତଥାପି କାଞ୍ଚନ ଆସିଲା ନାହିଁ । ବାହାରକୁ ଗଲା । ମନରେ ପାପ ଛୁଇଁଲା । ଗଲା ରାତିରେ କଳି

କଥା ମନେପକାଇଲା ଯୋଗିଆ । ଗାଁ ସେମୁଣ୍ଡ ବାଂଫିକୁ ଡ଼େଇଁ ପଡ଼ିବ ବୋଲି କାଞ୍ଚନ ତାକୁ ଧମକ ଦେଇଥିଲା । ସେକଥା ଶୁଣି ତାର ରକ୍ତ ମୁଣ୍ଡକୁ ଚହଟିଗଲା । ପରସ୍ତେ ଛେଚିବାପରେ ନିର୍ବେଦ ହୋଇ ପଡ଼ିଯାଇଥିଲା ଯୋଗିଆ ।

କଣ ଭାବି ଗାଁ ସେମୁଣ୍ଡ ବାଂଫି, କୂଅ, ପୋଖରୀ ସବୁଆଡ଼ ଖୋଜିଲା । ନିରାଶ ହେଲା । ବୁଲି ବୁଲି ଆସି ଚୁପ୍ ହୋଇ ମୁହଁମାଡ଼ି ଶୋଇପଡ଼ିଲା । ହେଲେ ଆଖିରେ ତାର ସବୁଦିନ ଭଳି ନିଦ ଆସୁନଥିଲା ସେଦିନ ।

ଯୋଗିଆର ଗୁଡ଼ିଟି ଛିଣ୍ଡିଯାଇ ଭାସି ଭାସି ଚାଲିଥିଲା ଆକାଶର ପେଟଭିତରେ । ପ୍ରଥମେ ପ୍ରଥମେ ଦେଖାଯାଉଥିଲା । ଭାବୁଥିଲା : ହେଇଟି ପାଖରେ ଦେଖାଯାଉଛି, ଧରି ପକେଇବି । ଏବେ ? କାହିଁ କୁଆଡ଼େ ଥିବ ତାର ଠିକଣା ଜଣା ନାହିଁ ।

ଯୋଗିଆର ଭାବନା ଆଉଟିକେ ବାଙ୍କେଇ ଗଲା ।

ଶେଷରେ ଆସିଲା ଝଡ଼ । ଦୂର୍ବିପାକ । ତାର ସ୍ୱପ୍ନର ଇମାରତ ଭାଙ୍ଗି ଚୁର୍‌ମାର ହୋଇଗଲା । ଝଡ଼ରେ ବରଜ ଖଣ୍ଡିକ ତଳେ ପଡ଼ିଗଲା । ଉଠାଇବା ଲାଗି ପାଖରେ ନଥିଲା ସମ୍ବଳ । ମନରେ ନଥିଲା ସାହସ । ଈଶ୍ୱରଙ୍କ ପ୍ରତି ଛାତିତଳେ ଜମା ହୋଇଥିବା ବିଶ୍ୱାସତକ କ୍ରମେ ମହମପରି ତ ରଳିବାକୁ ଲାଗିଲା ।

ଏଣିକି ଯୋଗିଆ ନିଃସ୍ୱ । ତାର ଅଣ୍ଟା ହାଡ଼ ନଇଁଯାଇଛି । ମନର ବଳ ଭାଙ୍ଗିପଡ଼ିଛି । ତାକୁ ଦେଖି ସାହି ପଡ଼ିଶାର ଲୋକେ ଟାହି ଟାପରା କରୁଛନ୍ତି । ସେ ଚୁପ୍ ରହୁଛି । ତା ଛଡ଼ା ତାର ଉପାୟ ନାହିଁ । ତାର ଗୁଡ଼ିଟି ହଜିଯାଇଛି ଯେ !

କିଛି ଦିନ ତଳେ ଜଣେ ଅଫିସର ବାବୁ ଆସିଥିଲେ । କହୁଥିଲେ ବରଜ ଭାଙ୍ଗିଯାଇଥିବା ଲୋକଙ୍କୁ ଟଙ୍କା ମିଳିବ । ଋଣ ମିଳିବ । ସେମାନେ ପୁଣି ନୂଆ ବରଜ କରିବେ । କିନ୍ତୁ କାହିଁ ? କୁଆଡ଼େ ଗଲେ ସେ ଭଦ୍ର ଲୋକ ?

ଯୋଗିଆ ଏବେ ଗୋଟେ ଦିନମଜୁରିଆ । ଅନ୍ୟର ପାଇଟି କରି ପେଟ ପୋଷେ । ଦିନମଜୁରିଆର କଣ ବା ସ୍ୱପ୍ନ ! ଆଉ କିଛି ଭାବିପାରିଲାନି ସେ । ନୂଆ ପାଖୁଡ଼ି ହାଟରୁ ଆଣି ରଖିଥିଲା ବରଜରେ ଲଗେଇବବୋଲି । ମରି ଢାଳ ହୋଇଗଲାଣି । ସବୁ ନୂଆ ଜିନିଷ ଏପରି ପୁରୁଣା ହୋଇଯାଏ । ଦିନେ ନା ଦିନେ । ତେବେ ?

ଅନ୍ତତଃ ଏଇ କେଇଦିନ ହେଲା ସେ ଘଟଣାଟିକୁ ପୂରାପୂରି ପାଶୋରି ଦେଇଥିଲା ।

ସେଇ ମୁହଁ, ହାବଭାବ କଥାବାର୍ତ୍ତା, ସମସ୍ୟା, ସବୁକିଛି ତାର ଭାବନାକୁ ଓଲଟ ପାଲଟ କରିଦେଉଥିଲା ଯେମିତି । କାହିଁକି ? ଅନେକ ଦିନତଳେ ଘଟିଯାଇଥିବା ଅଘଟଣକୁ ମନେପକାଇ ଲାଭ ବା କଣ ?

କାଞ୍ଚନ ତାକୁ ଛାଡ଼ି ଚାଲିଗଲା । ଗଲାବେଳେ ପଦେ କଥା ନ କହି ଚାଲିଗଲା ଯେ ଆଉ ଫେରିଲା ନାହିଁ । ସେତିକିରେ ତାର ରାଗ ଭାଜିଲା ନାହିଁ । ସେତିକି ନୁହେଁ ଯୋଗିଆ ଛାତିର କୋହ ଚାପିରଖି ସହିଗଲା । କାଞ୍ଚନ ଚାଲିଗଲା ପାଖ ଗାଆଁର ଅନ୍ୟଜଣଙ୍କ ଘରକୁ ।

ଘଟଣାଟିକୁ ମନେପକାଇବାକୁ ତାର ଇଚ୍ଛା ନଥିଲା । ସେ ଅନେକଦିନ ତଳର କଥା ।

ଆଜି ସକାଳୁ ଆରଗାଁକୁ ଯାଇଥିଲା ମୂଲବୁଝିବାକୁ । ଫେରିଲାବେଳେ କାଞ୍ଚନକୁ ଦେଖିପାରିଥିଲା ଗାଁ ମୁଣ୍ଡ ଗାଡ଼ିଆ ପାଖରେ । ଶୁନୁଶୁନିଆ ଶାଗ ତୋଳୁଥିଲା । ଯୋଗିଆ ଅନ୍ୟକଥା ଭାବିଭାବି ଚାଲି ଆସୁଥିଲା । କିନ୍ତୁ ?

ହଠାତ୍ ତାର ଅନ୍ୟମନସ୍କତାକୁ ଭାଙ୍ଗିଦେଲାକିଏ ? କାହାର ଏ ଡାକ ? ପଛକୁ ଚାହିଁ ଦେଖିଲା ଛୋଟ ପିଲାଟିଏ । ବୋଧହୁଏ କାଞ୍ଚନର ପୁଅ । ଖନେଇ ଖନେଇ ବାପା ବାପା ବୋଲି ଡାକି ପାଖକୁ ଦୌଡ଼ି ଆସିଛି । ଅଥଚ ଯୋଗିଆର ସେଇ ଉଦାସିଆ ଚାହାଣୀ ଦେଖି, କଣ ଭାବି ପିଲାଟା ଚିରିଚିରେଇ ଉଠିଲା ।

ତୁନି ହେବାକୁ ଯୋଗିଆ ବାରମ୍ବାର ଇସାରା ଦେଲା । ବିଚରା ପିଲାଟା ବୁଝି ପାରିଲା ନାହିଁ । ହଠାତ୍ ପିଲାଟିର କାନ୍ଦଶୁଣି ଶାଗତୋଳା ଛାଡ଼ି କାଞ୍ଚନ ଦୌଡ଼ି ଆସୁଥିଲା ପୁଅ ପାଖକୁ । କିନ୍ତୁ ଯୋଗିଆକୁ ଦେଖି ଅଟକି ଗଲା । ଯୋଗିଆ କାଞ୍ଚନକୁ ଚାହିଁଲା । କାଞ୍ଚନ ତଳକୁ ମୁହଁ ପୋତି ସେମିତି ଜଡ଼ ପାଲଟି ଯାଇଥିଲା ।

# କସ୍ତୁରୀ ମୃଗ

ସକାଳୁ ସକାଳୁ ନିଦ ଭାଙ୍ଗି ଯାଇଥିଲେ ବି ବାହାରେ ଥଣ୍ଡା କମି ନ ଥିବ ଭାବି ଅରବିନ୍ଦ ରେଜେଇ ଭିତରେ ଆଉ କିଛି ସମୟ ଯାଏ ଆଖିବୁଜି ପଡ଼ି ରହିଥିଲେ ଶୀତ ସକାଳର ତଟକା ଉଷ୍ଣମଟା କାଳେ ଛାଡ଼ିଯିବ ବୋଲି । ରେଜେଇରସେଇ ଅନ୍ଧକାର ଭିତରୁ ସକାଳର କେତେଗୁଡ଼ିଏ ଚିତ୍ର ତାଙ୍କ ବନ୍ଦ ଆଖି ଆଗରେ ଉଭା ହେଲା: ରୂପାଙ୍କରା କେତେବେଳୁ ତାଙ୍କ ପାଖରୁ ଯାଇ ସକାଳର ନିତ୍ୟକର୍ମ ସାରି ଏବେ ଠାକୁରଙ୍କ ପୂଜାରେ ବ୍ୟସ୍ତ ଥିବେ, ଅରୁଣ ହକି ଷ୍ଟିକ୍‌ଟା ଧରି ଘର ସାମ୍ନା ଖେଳ ପଡ଼ିଆରେ ପହଞ୍ଚି ସାରିଥିବ, ପୂଜାରୀ ଟୋକା ପ୍ରାତଃଭୋଜନ ପାଇଁ ପରିବା ହୁଏତ କାଟୁଥିବ ।

ଘର ଭିତରକୁ ପଶି ଆସୁଥିବା କାହାର ପାଦ ଶବ୍ଦ ଶୁଣି ଅରବିନ୍ଦ କଇଁଚ ପରି ମୁହଁଟି କାଢ଼ି ଦେଖିଲେ ରୂପାଙ୍କରା ଠିଆ ହେଇଛନ୍ତି, ହାତରେ ଚା । ଅରବିନ୍ଦ ହାତ ବଢ଼େଇଲେ । ବାମ୍ଫ ବାହାରୁଥିବା ଏଇ ଚା ଟାକୁ ସୁଡୁସୁଡୁ କରି ପାଟି ଭିତରେ ପୁରୋଉ ପୁରୋଉ ଏଥର କହିଲେ: କାଗଜଟା କାଇଁ, ଦେଲ ।" ତାଙ୍କ ପ୍ରଶ୍ନ ଶୁଣି ରୂପାଙ୍କରା ଶୋଇବା ଘର ଡ୍ରଇଂ ରୁମ୍ ଆଡ଼କୁ ଚାଲିଗଲାବେଳେ ଅରବିନ୍ଦ ଆଖି ମୁଜିଦେଲେ ଓ ଭାବିବାକୁ ଲାଗିଲେ; ୟା ଭିତରେ ରୂପାଙ୍କରା ଟିକିଏ ମୋଟି ହେଇ ଯାଇଛନ୍ତି, ତଥାପି ସୌନ୍ଦର୍ଯ୍ୟରେ ଭଟ୍ଟା ପଡ଼ିନି । ଖୁବ୍ ଭଲ ଲାଗୁଛନ୍ତି, ଯେମିତି ଭଲ ଲାଗେ ସକାଳୁ ସକାଳୁ ଚାକର ପୂଜାରୀଙ୍କ ବିନା ସାହାଯ୍ୟରେ ନିଜ ହାତ ତିଆରି ଚା ଟା ଧରାଇଦେବାର ପ୍ରାଚୀନ ଅଭ୍ୟାସ । ପ୍ରାଚୁର୍ଯ୍ୟର ଶିଖରରେ ଥିବାବେଳେ ବି ଏ ଅଭ୍ୟାସଟିକୁ ସେ କେବେ ଭୁଲି ପାରିନାହାନ୍ତି ।

ଅରବିନ୍ଦ ଆଖି ଖୋଲିଲେ ।

ରୂପାଙ୍କରା ତାଙ୍କ ହାତକୁ ନୀରବରେ କାଗଜ ଟୁକୁଡ଼ାଟି ବଢ଼ାଇ ଦେବାକୁ ଯାଉଥିଲାବେଳେ ତାଙ୍କର ମନେହେଲା ଯେମିତିସେ ଚିତ୍କାର କରି ପକେଇବେ: ଆରେ, ଆଜିର ଖବରକାଗଜ କହିଲି ପରା ! ମାତ୍ର ନିଜକୁ ସମ୍ଭାଳି ନେଲେ । ତାଙ୍କର ମନେପଡ଼ିଲା- ଆଜି କାଗଜ ବନ୍ଦ, ଗତକାଲି ଦୀପାବଳି ଲାଗି ଛୁଟି ଥିଲା । ତଥାପି ସେ ରୂପାଙ୍କରାଙ୍କ ହାତରୁ ଚଉଡ଼ା କାଗଜଟି ନେଲେ ଓ ଭାଙ୍ଗ ଫିଟେଇ ପଢ଼ିବାକୁ ଲାଗିଲେ ।

ଚିଠିଟି ପଢ଼ିସାରି ହଠାତ୍ ସେ ଧ୍ୟାନସ୍ଥ ହେଇଗଲେ । ରୂପାଙ୍କରା ଘର ଭିତରେ କିଛି ଗୋଟେ କାମ କରୁଥିବା ଆଳରେ ତାଙ୍କର ପ୍ରତିକ୍ରିୟାକୁ ଅପେକ୍ଷା କରିଥିଲେ । ସାମ୍ନାରେ ଦର୍ପଣକୁ ଚାହିଁଲେ ଅରବିନ୍ଦ । କାନ ଉପରେ କେଇଟା ବାଳ ପାଚିଗଲାଣି ତାଙ୍କର । ତଥାପି ପଚାଶ ପୂରିବାକୁ ଆଉରି କେଇଟା ବରଷ ବାକି ଅଛି । ରୂପାଙ୍କରାଙ୍କୁ ଏଥରସେ ଜିଜ୍ଞାସା କଲେ: ଏ ଶର୍ମିଷ୍ଠାଟି କିଏ ?

: ପାତ୍ର ଡ୍ରାଇଭରର ଝିଅ, ଅରୁର କ୍ଲାସ୍‌ମେଟ୍ ।

ରୂପାଙ୍କରା ଯିମିତି ଆହୁରି ଅନେକ କିଛି କହିବାକୁ ଚାହୁଁଥିଲେ । କିଏ ତାଙ୍କ ଗଳା ଚାପି ଧରିଲା । ତଥାପି ସେଗୁଡ଼ାକ ଦୀର୍ଘଶ୍ୱାସ ହେଇ ପଦାକୁ ବାହାରି ଆସିଲା । ଅରବିନ୍ଦ ନିଜକୁ ନିଜେ ଏଥର କହିବାକୁ ଲାଗିଲେ: ଓ! ତମେ ତାହାହେଲେ ଆଗରୁ ଏ ସବୁ ଖବର ପାଇକରି ମତେ ଲୁଚେଇଥିଲ ନା ?' ନିଜ କାର୍ ଚଳାଉଥିବା ଚାଳକର ଝିଅ ସାଥୀରେ ଖୋଦ୍ ମାଲିକର ପୁଅ ପ୍ରେମ କରୁଥିବାରୁ ରୂପାଙ୍କରା ବିମର୍ଷରେ ଭାଙ୍ଗିପଡ଼ିଥିଲେ । ଅରବିନ୍ଦ ସ୍ତ୍ରୀଙ୍କ ଦୁଃଖରେ ସହଯୋଗ କରିଥିଲେ ଯାହା । ଗାଡ଼ି ପାଖରେ ପହଞ୍ଚିବା ମାତ୍ରେ ଯିଏ ଦିନେ ସଲାମ ମାରି ଦରଜା ଖୋଲି ଦେଉଥିଲା, ସିଏ ପୁଣି ସମୁଦିହେଇ କାନ୍ଧରେ କାନ୍ଧ ମିଳେଇବ, ଏଇ ଭାବନା ଅରବିନ୍ଦଙ୍କ ସଂଭ୍ରାନ୍ତ ଅହଂକାର ପ୍ରତି ଗୋଟେ ଚ୍ୟାଲେଞ୍ଜ୍ ନୁହେଁ ତ ? ହେଲେ ତାଙ୍କ ପୁଅ ଏପରି ହୀନ ଷଡ଼ଯନ୍ତ୍ରର ଶିକାର ହେଇଯାଇଛି ବୋଲିକାହାକୁ ସେ ମୁହଁ ଖୋଲି କହିବେ ?

ଯେ କୌଣସି ପରିସ୍ଥିତିରେ ଅରୁଣର ଏଇ ନିଷ୍ପତ୍ତି ପ୍ରତି ସମର୍ଥନ କରିବା ଲାଗି ତାଙ୍କ ଯୁକ୍ତି କୁଳୋଉ ନ ଥିଲା । ବିରକ୍ତିରେ ସେ କହି ପକେଇଲେ: ଅରୁଟାର ଜମା ଅକଲ୍ ଆସିଲାନି... ।

: ଲାଉ ଗଛରେ ଆଉ କଣ କଖାରୁ ଫଳନ୍ତା ?' କହୁ କହୁ ରୂପାଙ୍କରା ଖାଲି କପ୍‌ଟା ଧରି ଘରୁ ବାହାରିଗଲେ ଆହତ ସର୍ପିଣୀ ପରି ।

ଅରବିନ୍ଦ ବୁଝିଗଲେ ବାଣଟିଏ ଫୁଟିବ ଫୁଟିବ ହଉଥିଲା, ସେ କେବଳ ନିଆଁ ଧରେଇ ଦେଇଛନ୍ତି । ରୂପାଙ୍କରାଙ୍କର ତାସଲ୍ୟ ପୁଅକୁ ଯେତିକି ନୁହେଁ, ଖୋଦ୍ ତାଙ୍କ ପ୍ରତି ବେଶି ରହିଛି ବୋଲି ସେ ଜାଣିଥିଲେ । ଅସଲ ବେଳ ଦେଖି ନାରାଚଟି ଛାଡ଼ିବା ଲାଗି ଯେମିତି ସେ ଅପେକ୍ଷା କରିଥିଲେ ଅନେକ ଦିନରୁ । ମନେ ମନେ ଏଥର ହସୁ ହସୁ ପୁଳାଏ ସେଥିରୁ ଓଠ ପାଖରେ ହାବୁକା ଖାଇଗଲା । ସାମ୍ନା ଦର୍ପଣରେ ତାର ପ୍ରତିଫଳନ ଦେଖି ହଠାତ୍ ସେ ଅନ୍ୟମନସ୍କ ହେଇପଡ଼ିଲେ ।

ଜୀବନକାଳ ଭିତରେ କିଏ ଇମିତି ଥରୁଟିଏ ହେଲେ ବି ବ୍ୟାଧର ଭୂମିକା ଗ୍ରହଣ ନ କରିଛି ଯେ ! ଶର ସନ୍ଧାନ କରିବାର ପହିଲି ଅନୁଭୂତିଟିକୁ ଏ ଯାକେ ବି ଭୁଲି ପାରି ନ ଥିଲେ ଅରବିନ୍ଦ । ଭୁଲି ହୁଏ କି ?

ସେ ଦିନର ସନ୍ଧ୍ୟା ।

ଆଲୋକ ସୁସଜ୍ଜିତ ଜନାକୀର୍ଣ୍ଣ କଲେଜ୍ ଅଡିଟୋରିୟମ୍‌ଟି ବେଶ୍ ରୋମାଞ୍ଚକର ମନେ ହେଉଥାଏ ଅନେକ ସ୍ୱପ୍ନିଳ ଯୁବକ ଯୁବତୀଙ୍କର ମୃଦୁଗୁଞ୍ଜନରେ । ଯିମିତି ଫୁଲ ଆଉ ଭ୍ରମରମାନଙ୍କର ମେଖଳା । ଛାତ୍ର ସଂଘର ସଭାପତି ଭାବେ ମହିଳା ସଂଗୀତ ପ୍ରତିଯୋଗିତାର ଦାୟିତ୍ୱଟିକୁ ତୁଲାଇବା ପାଇଁ ତାଙ୍କୁ ମଞ୍ଚାରଢ଼ ହେବାକୁ ପଡ଼ିଥାଏ ସେଇ ମୁହୂର୍ତ୍ତରେ । ପାର୍ଶ୍ୱସ୍ଥ ବିଚାରକ ମଣ୍ଡଳୀ ଗୀତ ଶେଷ ପରେ ଗାୟିକାମାନଙ୍କର ସ୍ୱର, ତାଳ ଉପରେ ରାୟ ଟିପି ରଖୁଥାନ୍ତି ନିଜସ୍ୱ ମାପକାଠିରେ ତଉଲିବା ପରେ ।

ଗମ୍ଭୀର ପରିବେଶଭିତରୁ ହଠାତ୍ କରତାଳିର ବର୍ଷା ଆରମ୍ଭ ହେଲା । ଅରବିନ୍ଦ ମଞ୍ଚ ଉପରୁ ଦର୍ଶକଙ୍କ ଆଡ଼କୁ ଦୃଷ୍ଟି ଫେରାଇଲେ । ଝିଅଟିଏ ମଞ୍ଚ ଉପରକୁ ଆସୁଛି । ଚାହାଁଣିରେ କିଛିଟା ଭୀରୁ, ଚାଲିରେ ନାରୀର ସ୍ୱାଭାବିକ ଲଜ୍ଜ୍ୟା, ତଥାପି ମୁହଁର ଲାବଣ୍ୟ କୌଣସି ବାଧାବନ୍ଧନ ମାନିବାକୁ ପ୍ରସ୍ତୁତ ନୁହେଁ ।

ତେବେ ଅରବିନ୍ଦ ନିଜକୁ ଏତେ ଦୁର୍ବଳ ମନେ କରୁଛନ୍ତି କାହିଁକି ? ଏଥି ପୂର୍ବରୁ ଅନେକ ଝିଅ ନିଜ ନିଜର ଗୀତ ଗାଇ ଚାଲିଗଲେଣି । ସେ ନିଜେ ତ କିଛି ମୁହୂର୍ତ୍ତ ପୂର୍ବରୁ ଘୋଷଣା କରିସାରିଥିଲେ: ୟା ପରେ ଯିଏ ଆପଣମାନଙ୍କୁ ଗୀତ ଶୁଣେଇବେ, ସେ ହେଉଛନ୍ତି ଇତିହାସ ବିଭାଗର ଶେଷବର୍ଷ ଛାତ୍ରୀ କୁମାରୀ ସୁନନ୍ଦା ମିଶ୍ର । ତଥାପି ନିଜର ଏଇ ଭାବାନ୍ତରକୁ ଅନ୍ୟ ସାମ୍ନାରେ ଧରା ନ ପକାଇବା ଲାଗି ସେ ଥିଲେ ଖୁବ୍ ସଚେତନ । ସେ ଦିନର ଶ୍ରେଷ୍ଠ ଗାୟିକାର ସମ୍ମାନ ପାଇବା ଆଗରୁ ସୁନନ୍ଦା ଗାଇଥିଲେ: ବୁକେ ଆମାର୍

ଆଗୁନ୍ ଜଲେ... । ଯାଦୁକରର ସମ୍ମୋହନ ଭଳି ସମବେତ ଶ୍ରୋତାଙ୍କୁ ସେଦିନ ମୁଗଧ ଚକିତ କରି ଦେଇଥିଲେ ସୁନନ୍ଦା । ଦ୍ୱିତୟ ଗୀତଟିଏ ଗାଇବା ଲାଗି ଶ୍ରୋତାମାନଙ୍କ ମଧ୍ୟରୁ ଘନ ଘନ ପ୍ରତ୍ୟକ୍ଷ ଅନୁରୋଧ ଓ ଚିଟ୍ ଆସିଲା । ମାତ୍ର ସଂଚାଳକର ଦାୟିତ୍ୱରେ ଥାଇ ଅରବିନ୍ଦ ନିୟମ ଭାଙ୍ଗିବେ ନାହିଁ ବୋଲି ସିଧାସଳଖ କହିଦେଲେ । ମାତ୍ର ନିଜ ମନକୁ ବୁଝାଇ ପାରିଲେନି । କଣ କହି ବୁଝାଇଥାନ୍ତେ ? ଆଶ୍ୱାସନା ଦେଲେ - ଯୁବକ ଓ ଯୁବତୀମାନଙ୍କ ବିଶ୍ୱାସ ଓ ଆଦର୍ଶର ପ୍ରତିନିଧି ହେଇଯିବା ପରେ ନିଜର ଭାବମୂର୍ତ୍ତିଟିକୁ କଣ ନଷ୍ଟ କରିବା ଉଚିତ ? ତଥାପି ପରବର୍ତ୍ତୀ ଗାୟିକାଙ୍କୁ ଆହ୍ୱାନ କରିବା ସମୟରେ ତାଙ୍କର ସ୍ୱରଭଂଗ ଟିକକ ତାଙ୍କୁ ଖୁବ୍ ବିଚଳିତ ଓ ଅପରାଧୀ କରି ଦେଇଥିଲା । ସେଦିନ ଆସର ଶେଷରେ ଅରବିନ୍ଦ ନିଜ କୋଠରୀ ଭିତରକୁ ଫେରି ଆସିଲାବେଳେ ମନେ ମନେ ସଙ୍କଳ୍ପବଦ୍ଧ ହେଲେ: ନାଃ, ମୁଁ ବ୍ୟାଧ ହେବି ।"

କସ୍ତୁରୀ ଉଦ୍ଦେଶ୍ୟରେ ଅରବିନ୍ଦ ବ୍ୟାଧ ସାଜିଲେ । ମନ ଭିତରେ ପ୍ରଶ୍ନଟିଏ ସମାଧାନ ପାଉ ନ ଥିଲା । କସ୍ତୁରୀ ପାଇଁସେ ବ୍ୟାଧ ହେଉଛନ୍ତି ନା କସ୍ତୁରୀ ନିଜ ଗୁଣରେ ତାଙ୍କୁ ବ୍ୟାଧ ହେବାକୁ ବାଧ୍ୟ କରୁଛି ? ଲକ୍ଷ୍ୟ ନିର୍ଣ୍ଣୟ କରି ଧନୁରେ ଗୁଣ ଯୋଚିଲେ ଅରବିନ୍ଦ । ଠିକ୍ ଏଇ ମୁହୂର୍ତ୍ତରେ ମୃଗୁଣୀଟି ତ୍ରାହି ତ୍ରାହି ନିଶବ୍ଦ ଗୁଞ୍ଜନରେ ଦୃଷ୍ଟି ସୀମାରୁ ଅପସରି ଗଲା । ଯିମିତିଗୋଟାଏ ଛକାପଂଝା ଖେଳ ଯେ । ପଛେ ପଛେ ଧାଇଁଛନ୍ତି ଅରବିନ୍ଦ । ଖୁବ୍ କ୍ଳାନ୍ତ, ଦେହ ଅବଶ, ତଥାପି ଏତେ କ୍ଳାନ୍ତି ଭିତରେ ଏତେ ପୁଲକ ଲୁଚିଥାଏ କିପରି - ବୁଝିପାରିଲେନି ସେ । ମୃଗୁଣୀଟି ଝଙ୍କା ବୁଦାର ଆଢୁଆଳରେ କେବେ କିମିତି ଲୁଚିଗଲେ, ବ୍ୟାଧଟି ଆଶଙ୍କାରେ ଚମକି ଉଠେ । ଛାତି ଦପ୍‌ଦପ୍ ହୁଏ ଓ ମୃଗୁଣୀକୁ ଖୋଜି ପାଇବାରଲୁଚକାଳି ଖେଳ ଚାଲିଥାଏ ଅହରହ । ଦୃଷ୍ଟି ଅନ୍ତରାଳେ ଥାଇ ସେଦିନ ଯେମିତି ମୃଗୁଣୀଟି କହିଦେଲା: ଦୃଷ୍ଟି ଅନବତ କର, ମୁଁ ଧରାଦେବି ।"

ତାହା ହିଁ ହେଲା ।

ପ୍ରଥମଥର ପାଇଁ ସେଦିନ ଅରବିନ୍ଦ ପାଟି ଖୋଲିଲେ: ଜାଣିଚ, ସମସ୍ତେ ଆମ କଥା ଜାଣିଗଲେଣି ? କଲେଜର କାନ୍ଥବାଡ଼ ବି ।

: ସମ୍ପୂର୍ଣ୍ଣ ଆତ୍ମସମର୍ପଣରେ ଲଜ୍ଜା ଆଉ ଅପବାଦର ପ୍ରଶ୍ନ ଇ ଅବାନ୍ତର । ସୁନନ୍ଦାର ଏଇ ଦମ୍ଭୋକ୍ତି ଶୁଣିବା ମାତ୍ରେ ଅରବିନ୍ଦଙ୍କର ମନେ ହେଲା, ସବୁ ନାରୀର ମନ ଯିମିତି ପାହାଡ଼ ସନ୍ଧିର ବରଫମୁଣ୍ଡା ପରି । ଥରେ ଉତ୍ତାପ ପାଇଲେ, ସମୁଦ୍ରରେ ମିଶିବା ଯାଏ କିଛି ହିଁ ବାଧାବନ୍ଧନକୁ ଖାତିର୍ କରିବେନି ଏଇ ଝରଣାମାନେ । ଆସକ୍ତି ଜର୍ଜରିତ ଅରବିନ୍ଦ

ପୁନର୍ବାର ଧନୁ ଉଠାଇଲା ବେଳକୁ ସୁନନ୍ଦା ସେଠାରୁ ଦୃଶ୍ୟାନ୍ତର ହୋଇ ଯାଇଥିଲେ । ମୃଗୁଣୀର ସେଇ ତ୍ରସ୍ତ ଚାହାଣୀକୁ ମନେ ପକାଇବାକୁ ଚେଷ୍ଟା କରିଥିଲା ବ୍ୟାଧ । କିଛି ବାସ୍ତବ ଆଉ କିଛି କଳ୍ପନା ତାକୁ ନିର୍ବାକ୍ କରିଦେଲା । ଯେ ତାଙ୍କର ଭ୍ରମ ନୁହେଁ ତ ! ସୁନନ୍ଦାଙ୍କ ବଦଳରେ ତାଙ୍କ ଦୃଷ୍ଟି ସାମ୍ନାରେ ଅନ୍ୟଜଣେ ବୃକ୍ଷପରୀ ଯେ ?

ସୁନନ୍ଦାଙ୍କର ଆକସ୍ମିକ ବିୟୋଗ ସଂବାଦ ପାଇବା ପରେ ପ୍ରଥମଥର ପାଇଁ ଅରବିନ୍ଦ ସେଦିନ ଅନୁଭବ କଲେ ତାଙ୍କ ପାଦତଳର ମାଟି ଖସିଯାଇଛି । ସଂବିତ୍ ଫେରିପାଇଲା ବେଳକୁ ଅରବିନ୍ଦ ନିଜକୁ ଆବିଷ୍କାର କଲେ ଡାକ୍ତରଖାନାରେ ନିଜ ପରିବାର ପରିଜନଙ୍କ ସାମ୍ନାରେ । କାରଣଟା କାହାରିକୁ ଅଜଣା ନ ଥିଲା । ପରବର୍ତ୍ତୀ ମୁହୂର୍ତ୍ତରେ ସେମାନଙ୍କ ପ୍ରରୋଚନା, ଅଳି ଓ ବାଧ୍ୟବାଧକତାରେ ହିଁ ରୂପାଙ୍କରାଙ୍କୁ ଧର୍ମପତ୍ନୀ ଭାବେ ସେ ଗ୍ରହଣ କଲେ ।

ଅରବିନ୍ଦ ଅନୁଭବ କଲେ ସେଦିନ ସୁନନ୍ଦାଙ୍କ ସହିତ ଗୋଟେ ଆଦର୍ଶର ମଧ୍ୟ ମୃତ୍ୟୁ ହେଇଯାଇଛି । ପ୍ରତିଟି ରାତିରେ ରୂପାଙ୍କରାଙ୍କୁ ସେ ପାନୀୟ ଭଳି ଆକଣ୍ଠପାନ କରିବାକୁ ଚେଷ୍ଟା କରି ଆସିଛନ୍ତି । ମାତ୍ର ତୃପ୍ତି ପାଇପାରିନାହାନ୍ତି । ଜୀବନର ସେଇ ସ୍ମୃତି ଟିକକ ସମସ୍ତ ସୁଖ ସୌହାର୍ଦ୍ଦ୍ୟର ଅନ୍ତରାୟ ହେଇଯାଇଛି । ତେବେ ସ୍ମୃତି ବିନା କେହି କଣ ବଞ୍ଚିବା ସଂଭବ ?

ରୂପାଙ୍କରାଙ୍କ ପାଇଁ ସେ ହେଉଛନ୍ତି ଏ ଜନ୍ମର ଯୋଗ୍ୟତମ ତଥା ସମର୍ଥ ପୁରୁଷ ଅଥଚ ସେଇ ପୌରୁଷ ପ୍ରତିଷ୍ଠା ପାଇଁ ନିଜ ପ୍ରିୟ ଆଦର୍ଶଟିକୁ ବି ଅରବିନ୍ଦ ହତ୍ୟା କରିଥିଲେ ନିର୍ମମ ଭାବେ । ରୂପସୀ ରୂପାଙ୍କରାଙ୍କ ପରି ରାଜନୈତିକ ଜୀବନରେ ସେ ପାଇଛନ୍ତି କୋଠାବାଡ଼ି, ମଟରଗାଡ଼ି ଓ ଆହୁରି ଅନେକ କିଛି । ସେତେବେଳେ ତାଙ୍କର ମନେ ହେଇଥିଲା ଆଦର୍ଶ ଗୋଟେ ଫମ୍ପା ଆବାଜ୍ ଛଡ଼ା ଅନ୍ୟ କିଛି ନୁହେଁ । ଏକଥା ବି ସେ ଜାଣିଥିଲେ: ଲୋକଙ୍କ ପାଇଁ ଶହୀଦ ହେବାକୁ ପ୍ରସ୍ତୁତ ଅଛ ବୋଲି କହିଲେ ସେମାନେ ହସିବେ ଆଉ କହିବେ ହ୍ୟାପ୍ ପାଗଳାଟେ ଅଥଚ ସେମାନଙ୍କ ରକ୍ତ ଶୋଷି ସେଥିରୁ କାଣିଚାଏ ସେମାନଙ୍କ ଲାଗି ଫୋପାଡ଼ି ଦେଲେ ପ୍ରଶଂସାରେ ଅତିଷ୍ଠ ହୋଇ ପଡ଼ିବେ ।" ମନେପଡ଼ିଲା କୋଉ ଜଣେ କବି ସେଦିନ ତାଙ୍କୁ ଉପହାସ କରି ଗାଇଥିଲା: ମୁହଁ ସବୁ ବନ୍ଦ କର - ଜିନ୍ଦାବାଦ୍ ଜିନ୍ଦାବାଦ୍ । ତଣ୍ଡି ଚିପି ଧର୍ମ କର - ଜିନ୍ଦାବାଦ୍ ଜିନ୍ଦାବାଦ୍ । ମୁଖା ପିନ୍ଧି ସଖା କର - ଜିନ୍ଦାବାଦ୍ ଜିନ୍ଦାବାଦ୍ ।

ଉଚ୍ଚାରଣ ଆଉ ଆଚରଣ ଭିତରେ ଥିବା ବ୍ୟବଧାନ ଯୋଗୁଁ ଏହା ତାଙ୍କ ପାଇଁ ସେତେବେଳେ ଥିଲା କ୍ଷୀଣ ଚେତାବନୀଟିଏ ମାତ୍ର । ସେତେବେଳେ ଏ ସବୁକୁ ସେ ଖାତିର୍

କରୁ ନ ଥିଲେ ବି ଗୋଟେ ଅହେତୁକ ଆଶଙ୍କା ତାଙ୍କ ଉପରକୁ ବାରମ୍ବାର ଝାମ୍ପ ମାରୁଥିଲା । ସେଇଟା କଣ ତାଙ୍କ ଆଦର୍ଶର ପ୍ରେତ !

ରୂପାଙ୍କରାଙ୍କ ସହ ଏତେଦିନର ସମ୍ପର୍କ ଭିତରେ ତାଙ୍କ ଭିତରୁ କିଏ ଯିମିତି ବିଳାପ କରୁଥାଏ ଅହରହ: ନା, ହେଇ ପାରିଲାନି । ଗୋଟେ ନିଷ୍ଫଳ ଖେଳର ଅନୁଭତି ଛଡ଼ା ଅନ୍ୟ କିଛି ତ ଯେ ନୁହେଁ । ପ୍ରାକ୍ ଯୌବନର ସେଇ ଖୋଜୁଥିବି-ପାଉ-ନ-ଥିବି-ଅଥଚ-ଏ-କଥା-ଜାଣିବା-ପରେ-ବି-ସେ--ଖୋଜିବାର-ଶେଷ ନ ଥିବାର ଅନୁଭବ ଟିକକ ଏବେ କେବଳ ନିର୍ଜୀବ ସ୍ମୃତିଛଡ଼ା କଣ ହେଇ ରହିପାରେ ଆଉ ? ତାଙ୍କର ମନେହେଲା ସ୍ମୃତିଗୁଡ଼ାକ ସବୁବେଳେ କସ୍ତୁରୀର ମହକରେ ସମଗ୍ର ବର୍ତ୍ତମାନକୁ ମହିମାନ୍ୱିତ କରି ପକାଉଛି ।

ଅରୁ ଏବେ କୋଉଥିପାଇଁ ବ୍ୟାଧର ଭୂମିକାକୁ ସ୍ୱାଗତ କରୁଛି ଯେ ! ତାଙ୍କର ଆଶଙ୍କା ହେଉଥିଲା ମୃଗ ନା କସ୍ତୁରୀ - କାହା ପାଇଁ ତାର ଏ ବ୍ୟାଧବେଶ !! ସମସ୍ତେ ତ କସ୍ତୁରୀରୁ ଆରମ୍ଭ କରି ମୃଗ ପାଖରେ ଅଟକି ଯାଉଛନ୍ତି । ବୃକ୍ଷ ପରୀର ଜାନ୍ତବ ଆକର୍ଷଣ ପ୍ରତିଟି ପୁରୁଷ ପାଇଁ ଓ ପୁରୁଷର ନିବିଡ଼ ଆହ୍ୱାନ ପ୍ରତିଟି ନାରୀପାଇଁ ଯେପରି ଆଜି ଅଦୃଷ୍ଟ ଅଭିପ୍ରେତବୋଲି ତାଙ୍କର ମନେହେଲା ।

ଖବରକାଗଜ ପଢ଼ିବାର ଇଚ୍ଛା ଟିକକ କେତେବେଳୁ ମରିଯାଇଥିଲା । ରେଡିଓରୁ ସକାଳୁ ସକାଳୁ ଭାସି ଆସୁଥିଲା କୋଉ କବିର ଅନାହତ ଧ୍ୱନି । ମହାକାଳର ଅନ୍ତଚିରି ସେ ଧ୍ୱନି ତାଙ୍କର ଚେତନାକୁ ଯେମିତି ଗ୍ରାସ କରିନେଲା ।

ମନ ଭିତରେ ପ୍ରଶ୍ନଟେ ଉଙ୍କି ମାରିଲା: ଅରୁ ମୋ ଭଳି ହେଇଯିବନି ତ ? ଆଖି କୌଣସି ବାଧା ମାନିଲାନି । ନାଳମିଶା ଲୁଣିଆ ପାଣିତକ ପାଟି ଭିତରେ ପଶିଯାଉଥିଲାବେଳେ ନିଜକୁ ନିଜେ ସାନ୍ତ୍ୱନା ଦେଲେ: ଶର୍ମିଷ୍ଠା ନିଶ୍ଚେ ଭଲ ଗାଇ ଜାଣିଥିବ ଯେ !!

# ନଟୁଚୋରି

ଆଉ ସନ୍ଦେହର କୌଣସି କାରଣ ନଥିଲା । ମଧ୍ୟାନ୍ତର ସମୟରେ ଯେତେବେଳେ ଅଡ଼ିଟୋରିୟମ୍‌ର ଲାଇଟ୍ ଜଳିଲା - ସେମାନଙ୍କୁ ମୋ ସାମ୍ନା ସିଟ୍‌ରେ ବସିଥିବାର ଦେଖିଲି । ଯେ କେହି ସେ ମୁଦ୍ରା ଦେଖିଲେ ଭାବିବ ସେମାନେ ନିଶ୍ଚୟ ଦୁହେଁ ସ୍ୱାମୀ ଓ ସ୍ତ୍ରୀ । କିଛି ମୁହୂର୍ତ୍ତପରେ ଯେତେବେଳେ ଅର୍ଚ୍ଚନା ପଛକୁ ତାର ଦୃଷ୍ଟି ଫେରାଇଲା, ତାର କପାଳରେ ସିନ୍ଦୂର ଟୀକା ଦେଖି ପ୍ରାୟତଃ ମୁଁ ଚମକି ପଡ଼ିଲି । ଏତାଦୃଶ କାର୍ଯ୍ୟରେ ଅର୍ଚ୍ଚନା ନିଜକୁ ଆଦୌ ଲଜ୍ଜିତ ଅଥଚ ସଂକୁଚିତ ମନେ ନ କରୁଥିବା ମୁଁ ସ୍ପଷ୍ଟ ଭାବେ ତାର ମୁହଁରୁ ପଢି ପାରୁଥିଲି ।

ବାସ୍ତବିକ୍, ସେ ଖୁବ୍ ଖୁସି ଜଣା ପଡୁଥିଲା ଏବଂ ଅଫିସ୍‌ରେ ମୋର ବନ୍ଧୁମାନଙ୍କ ଠାରୁ ଅର୍ଚ୍ଚନା ସମ୍ପର୍କିତ ବିଭିନ୍ନ ସମୟରେ ଏଯାବତ୍ ଶୁଣି ଆସୁଥିବା ରୋମାଞ୍ଚକର ବିବରଣୀକୁ ଗୁଜବ ସ୍ତମ୍ଭରେ ସ୍ଥାନିତ ନ କରି ସତ୍ୟ ଅଥଚ ସାଂଘାତିକ ପର୍ଯ୍ୟାୟଭୁକ୍ତ କରିବାକୁ ମୁଁ ବାଧ୍ୟ ହେଲି ।

ସେଦିନ ଶ୍ରୀକୃଷ୍ଣ ସିନେମା ହଲରୁ ମାଲାୟଲମ୍ ଛବିଟି ଦେଖି ଫେରିବା ପରେ ଅନେକ ସମୟ ଯାଏ ମୁଁ ଶୋଇ ପାରିଲିନି । ତାର କାରଣ ମୂଳରେ ନଥିଲା ଚଳଚ୍ଚିତ୍ରର କାମୋଦ୍ଦୀପକ ତଥା ଉତ୍ତେଜିତ ସିକ୍ୱେନସ୍‌ମାନଙ୍କର ସମାହାର, ଥିଲା କେବଳ ଅର୍ଚ୍ଚନାର ଦାମ୍ଭିକତା ଓ ଜଣେ ଭାରତୀୟ ନାରୀର ଅବଦମିତ ଇଚ୍ଛାର ଜୟଯାତ୍ରା ତଥା ତା ପଛରେ ଥିବା ସଂଗୁପ୍ତ କାହାଣୀ ।

ଅର୍ଚ୍ଚନା ଘରକୁ ମୁଁ ଅନେକ ବାର ଯାଇଥିଲି । ତାର ସ୍ୱାମୀ ମୋ ସହ ଏକା ଅଫିସ୍‌ରେ କାମ କରେ । ଫୋରମ୍ୟାନ୍ । ମଝିରେ ମଝିରେ ଯେତେବେଳେ କୌଣସି ପ୍ରଶାସନିକ ତଦାରଖ ପାଇଁ ମୁଁ ମେସିନ୍ ଫ୍ଲୋରକୁ ଯାଏ ସେଇଠି ଦେଖାହୁଏ ନିର୍ମଳ ସହ । କେବେବେବେ ମେସିନ୍ ସଟ୍ ଥିଲାବେଳେ ତାର କାମ ବେଶୀ ନଥାଏ - ତେଣୁ ପିଅନ ହାତରେ ଚା ମଗାଏ । ଗପ ବି ଜମାଏ । ଖୁବ୍ ଅମାୟିକ । ଅଳ୍ପ ସମୟ ଭିତରେ ନିଜର କରିପକାଏ ସମସ୍ତଙ୍କୁ ।

ନିର୍ମଳ ସହ ଯେ କେବଳ ମୋର ସମ୍ପର୍କ ଅଫିସର ଭୂମିକା ଭିତରେ ସୀମାବଦ୍ଧ ରହିଥିଲା ସେ କଥା ନୁହେଁ । ଅଫିସ୍ ସମୟ ପରେ ସନ୍ଧ୍ୟାରେ ଯେତେବେଳେ ମୁଁ ସହରର ମୁଖ୍ୟ ରାସ୍ତାକୁ ଆସେ ଖୋଲାପବନ, କିଛି ଗୁଲିଗପ ଅଥବା ରାସ୍ତାରେ ଦଳ ଦଳ ହେଇ ଆତଯାତ ହେଉଥିବା କଲେଜ କୁଇନ୍‌ଙ୍କୁ ଦେଖିବା ପାଇଁ ବେଳେବେଳେ ନିର୍ମଳ ସହ ବି ଭେଟ ହେଇଯାଏ ସସ୍ତ୍ରୀକ । ତା ପରେ ଶୁଭେଚ୍ଛା ଜ୍ଞାପନ ପର୍ବ ଓ ପରସ୍ପରକୁ ହସ ଫୋପାଡ଼ିବା ପରେ ନିର୍ମଳର ସ୍ତ୍ରୀ ସହ ପରିଚୟ (ତାହା କେବଳ ପ୍ରାଥମିକ ସ୍ତରରେ ଏକଦା ଘଟିଥିଲା) ଓ ସେମାନଙ୍କ ଘରକୁ ସବିନୟ ଆମନ୍ତ୍ରଣରୁ ମୋର ଅର୍ଚ୍ଚନା ସହ ଯାହା କେବଳ ଜଣାଶୁଣା । ଏଠି କହିଦେବା ଉଚିତ, ନିର୍ମଳ ମୋଠୁ ପାଞ୍ଚ ବର୍ଷ ସାନ ହବ । ସେହି ହିସାବରୁ ଅର୍ଚ୍ଚନା ମୋଠୁ ଖୁବ୍ କମ୍‌ରେ ଦଶବର୍ଷ ସାନ ନିଶ୍ଚୟ ।

ଆପଣ କହିପାରନ୍ତି ସୁନ୍ଦର ପଣରେ ଅର୍ଚ୍ଚନା ଚଳଚ୍ଚିତ୍ର ନାୟିକା ଜୀନତ୍ ଅମନ ବା କିଟୁ ଗିଡଓ୍ୱାନିକୁ କେବେ ବି ଟପି ଯାଇ ପାରିବ ନାହିଁ । ହେଲେ ମୋ ମତକୁ ଆପଣ ନିଶ୍ଚୟ ସମର୍ଥନ କରିବେ - ଅର୍ଚ୍ଚନା ଆଦୌ ଅସୁନ୍ଦରି ନୁହେଁ । ପାତେଳି ହେଲେ ବି ଗଢଣ ଦୃଷ୍ଟିରୁ ବେଶ୍ ଋଚିପୂର୍ଣ୍ଣ । ଆଖି ଯୋଡ଼ିକ ବେଶ୍ ଟଣାଟଣା । ମୋଟାମୋଟି କହିବାକୁ ଗଲେ ଆପିଲିଙ୍ଗ୍ ଚେହେରା । ତାଛଡ଼ା ସାଂପ୍ରତିକ ଚେହେରା ଉପରେ କିଛିଟା ଗ୍ରେସ୍ ମାର୍କିଙ୍ଗ୍ ମଧ୍ୟ ପାଇବାକୁ ଅର୍ଚ୍ଚନା ହକ୍‌ଦାର ଏଥିପାଇଁ ଯେ ସେ କେବଳ ଦୁଇଟା ପିଲାଙ୍କର ମାଆ ନୁହେଁ, ଅନାଗତ ତୃତୀୟଟି ଭୂମିସ୍ପର୍ଶ କରିବା ଲାଗି ଉଚ୍ଛନ୍ନ । ଜରାୟୁର ବନ୍ଦୀଶାଳାରୁ ମୁକ୍ତି ପାଇଁ ବ୍ୟାକୁଳ ନିବେଦନ ତାର ଏବେ ବି ଜାରି ରହିଛି ।

ମଝିରେ ମଝିରେ ଯେତେବେଳେ ମୋର ଆଉ କୌଣସି କାମ ନଥାଏ ଚାଲିଯାଏ ନିର୍ମଳର ଘରକୁ । ଚା ପିଆ ହୁଏ । ଟେପ୍‌ରୁ ପଙ୍କଜ ଉଧାସ୍‌କୁ ଶୁଣେ ଓ ଏଣୁ ତେଣୁ ପ୍ରସଙ୍ଗହୀନ ଆଲୋଚନାରେ ନିଜକୁ ବ୍ୟସ୍ତରଖି ବୋର୍ ହୋଇଯିବା ପରେ ନିଜ ବସାକୁ ଫେରି ଆସେ । କ୍ରମେ ଏଇ ପ୍ରେମଟା ଗାଢ ହେଲା ।

ତା ପଛରେ ହୁଏତ ଗୋଟେ କାରଣ କାର୍ଯ୍ୟ କରୁଥିଲା । ଦୁହେଁ ଥିଲୁ ପ୍ରବାସୀ । ଯଦିଓ ଦୁହିଁଙ୍କ ଭିତରେ ବ୍ୟକ୍ତିଗତ ଅଥବା ରଚିଗତ ଅନ୍ୟ କୌଣସି ସମ୍ବନ୍ଧ ଥିବାର ମୁଁ ଏଯାବତ୍ ଜାଣିପାରିନି ।

ମଝିରେ ମଝିରେ ଅଧିକା ରାତିଯାଏ ତାସ୍ ଖେଳୁ ଆମେ । ସମୟ କଟେଇବାରେ ଇଏ ଆଉ ଗୋଟେ ଉପାୟ । ପାର୍ଟନର ହୁଅନ୍ତି ନିର୍ମଳ ଆଉ ମୁଁ, ଅର୍ଚ୍ଚନା ଓ ଅଜିତ୍ ଡୋଲେ । ଅଜିତ୍ ଡୋଲେର ଘର ଆସାମର ଦିବ୍ରୁଗଡ଼ରେ । ଆମ କମ୍ପାନୀ କାମ କରେ ରିକଭରି ଡିପାର୍ଟମେଣ୍ଟରେ । ନିର୍ମଳର ପଡ଼ିଶା ଘରେ ରହେ । ତାର ବି ସିଙ୍ଗ୍ ଡିଉଟି ନିର୍ମଳ ଭଳି । ଛୋଟ ଛୋଟ ଆଖି, ଚେପଟା ନାକ, ଗୋରା ତକ୍‌ତକ୍ ଚମଡ଼ା । ଆଉ ବାଙ୍ଗୁରା ବି । ନେପାଳୀଙ୍କ ଭଳି ଦେଖିବାକୁ । ବୟସରେ ନିର୍ମଳର ସମସାମୟିକ ।

ଅଜିତ୍ ଡୋଲେ ଓଡ଼ିଆ ବୁଝିପାରେ, କହିପାରେନା । ତେଣୁ ଆମ ସହ ପାର୍ଟନର ହେଇ ଖେଳିବାରେ ତାର ଅଥବା ଆମର କିଛି ଅସୁବିଧା ହୁଏନା । ଖେଳୁ ଖେଳୁ ମୁଁ ତାକୁ ଆସାମର ସାଂପ୍ରତିକ ଆନ୍ଦୋଳନ ସମ୍ପର୍କରେ ପଚାରେ । ପ୍ରଫୁଲ୍ଲ ମହାନ୍ତ ଅଥବା ଭୃଗୁ ଫୁକନଙ୍କ ନାଁ ଗୁଡ଼ିକ ଶୁଣିଛି କି ନାହିଁ ବୋଲି ପ୍ରଶ୍ନ କରେ । ପାପୋରି ଛବିରେ କାହିଁକି ଆସାମୀ ଝିଅ ନାୟିକା ଭୂମିକାରେ ଆସିଲେନି ବୋଲି କୁହୋ ମୋର ପଚାରିବା ଭଙ୍ଗୀରେ ସେ କେବଳ ଛୋଟ ହସଟିରେ ତାର ଉତ୍ତର ଫେରାଇଦିଏ - କିନ୍ତୁ ବାସ୍ତବରେ କିଛି କୁହେନା । ମୁଁ ବି ପ୍ରକୃତରେ ତାଠୁ କିଛି ଉତ୍ତର ପାଇବାର ଆଶାରେ ପ୍ରଶ୍ନ କରେ ନାହିଁ । କାରଣ ମୋ ପଚାରିବା ପ୍ରଶ୍ନର ଉତ୍ତର ସବୁ ମୁଁ ପତ୍ର ପତ୍ରିକା ମାଧ୍ୟମରେ ପାଇଥାଏ । ଫ୍ୟାକ୍ଟ୍ରିରୁ ବସାଘର ଆଉ ବସାଘରୁ ଫ୍ୟାକ୍ଟ୍ରି - ଏଇ ତାର ରୁଟିନ୍ ବନ୍ଧା ଜୀବନ । କାହା ଭଲ ଅଥବା ମନ୍ଦରେ ସେ ନ ଥାଏ । କେବଳ ତାସ୍ ଖେଳିବା ପାଇଁ ଆମେ ତାକୁ ଡାକୁ ଓ ସେ ମନା କରିପାରେ ନାହିଁ ।

ସେଦିନ ଅଜିତ୍ ଡୋଲେ ଆସି ମତେ ଅଫିସ୍‌ରେ ଖବର ଦେଲା ନିର୍ମଳକୁ ଟାଇଫଏଡ୍ । ଚାରିଦିନ ହେଲା ଫ୍ୟାକ୍ଟ୍ରିକୁ ଆସିନି । ଅର୍ଚ୍ଚନା ଖବର ପଠେଇଛି ତାଙ୍କ ଘରକୁ ଯିବା ପାଇଁ । ଦିନଟା ସାରା ଅଫିସ୍‌ରେ ଆଦୌ ମନ ଲାଗିଲାନି । ସେଦିନ ଅଫିସ୍‌ରୁ ସଂଧ୍ୟାରେ ଫେରି ସିଧା ମୁଁ ଚାଲିଲି ନିର୍ମଳ ଘରକୁ । ବଜାରରୁ କିଛି କମଳା ଓ ସେଓ ମଧ୍ୟ ନେଇ ଯାଇଥିଲି ଯିବା ବାଟରେ । ନିର୍ମଳକୁ ସେଦିନ ଜ୍ୱରରେ କମ୍ପୁଥିବାର ଦେଖିଲି । ଶହେ ଦୁଇ କି ତିନି ତାତି ଦେହରେ । ନିଜେ ଅର୍ଚ୍ଚନା ହସ୍‌ପିଟାଲକୁ ଯାଇ ଡାକ୍ତରଙ୍କ ପରାମର୍ଶ କରିଛି ଓ ଔଷଧ ବି କିଣି ଆଣିଛି । ମତେ ଦେଖି ନିର୍ମଳ ରେଜେଇ

ଘୋଡ଼େଇ ହେଇ ଖଟ ଉପରେ ଆଉଜି ବସିଲା । ମୁଁ ବି ଖଟ ଉପରେ ତା ପାଖରୁ ଅଳ୍ପ ଦୂରରେ ବସି ରହିଲି ।

ଗୋଟିଏ ଅନନ୍ୟ ଅନୁଭୂତି ସେଦିନ ମୋର ସମଗ୍ର ମାନସିକତାକୁ କାବୁ କରି ପକାଇଲା, ନିର୍ମଳର ଆକସ୍ମିକ ବ୍ୟବହାରରେ । ଦେହ ଖରାପ ଯୋଗୁଁ ହେଉ ଅଥବା ନିଜ ପ୍ରତି ବୈରାଗ୍ୟ ମନୋଭାବ ଯୋଗୁଁ ସେଦିନ ମତେ ନିର୍ମଳର ଅନେକ ସିଦ୍ଧାନ୍ତକୁ ବିନା ଯୁକ୍ତିରେ ମାନିନେବା ଛଡ଼ା ଗତ୍ୟନ୍ତର ନଥିଲା । ନିର୍ମଳ ଏଣୁତେଣୁ ବାଚାଳଙ୍କ ପରି ଗୁଡ଼ାଏ ଦର୍ଶନ ବଖାଣି ଚାଲୁଥିଲା ବୋଲି ଯେ କେହି ବିଶ୍ୱାସ କଲେ ବି ସେଇ ସବୁ ଭାଷଣକୁ ମୁଁ ସରବତ୍ ଭଳି ପିଇ ଯାଉଥିଲି । ତାର କଥା ସବୁର ସାରମର୍ମ ଏପରି ଥିଲା : ଏ ଜୀବନ ଅଳୀକ, ଆମର ଭଲ ପାଇବା କେବଳ ଶାରୀରିକ ଆବଶ୍ୟକତା ଛଡ଼ା ଅନ୍ୟ କିଛି ନୁହେଁ । ମୋହ ଗ୍ରସ୍ତ ଏ ଜୀବନ କେବେ ବି ଶରୀରଠୁ ଊର୍ଦ୍ଧ୍ୱରେ ରହି ପାରିବ ନାହିଁ । ଏପରିକି ଅର୍ଚ୍ଚନାର ଏଇ ପ୍ରେମ ସବୁ ମିଛ ଓ କ୍ଷଣ ସ୍ଥାୟୀ । ସବୁ କେବଳ ଦେହର ଆକର୍ଷଣ ଓ କୁହୁଡ଼ି ପରି ଅସ୍ୱଷ୍ଟ । ଆମେ ସମସ୍ତେ ଏଇ ସତ୍ୟ ସମ୍ପର୍କରେ ଅବହିତ ଅଥଚ ଯେତେବେଳେ ସେଇ ନିର୍ଦ୍ଦିଷ୍ଟ ସତ୍ୟ ଆମ ସାମ୍ନାରେ ଠିଆ ହୁଏ ଆମେ ତାର ମୁକାବିଲା କରିବାକୁ ଭୟ କରୁ, ଠିକ୍ ନଟୁଚୋରି ପରି ।

: ନଟୁଚୋରି ? ପଚାରିଲି ।

: ହଁ ଠିକ୍ ନଟୁଚୋରି ପରି, ବାଳକ ଶ୍ରୀକୃଷ୍ଣ ଯୋଉ ନଟୁ ପାଇଁ ମା ଯଶୋଦାଙ୍କୁ ହଇରାଣ କରୁଥିଲେ ଓ ଶ୍ରୀରାଧାଙ୍କୁ ଦାୟୀ କରୁଥିଲେ ସେଇ ନଟୁର ଅର୍ଥ ଯଶୋଦା ଏବଂ ଶ୍ରୀରାଧାଙ୍କ ପାଖରେ ଭିନ୍ନ ଭିନ୍ନ ଥିଲା । କିନ୍ତୁ ଯେତେବେଳେ ଶ୍ରୀରାଧାଙ୍କ ବକ୍ଷଦେଶରୁ ନଟୁଟି ଖସି ପଡ଼ିଲା, ସେଇ ସତ୍ୟର ପ୍ରକାଶରେ ମାଆ ଯଶୋଦା ନୁହନ୍ତି ପ୍ରେମିକା ଶ୍ରୀରାଧା ହତବାକ୍ ହେଇ ଯାଇଥିଲେ, ସତ୍ୟ ଠିକ୍ ସେଇ ନଟୁପରି । ସତ୍ୟକୁ ଗୋପନ ରଖି ଆମେ ଖୁବ୍ ଆଶ୍ୱସ୍ତ ମନେ କରୁ । ଅଥଚ ସେ ଯେତେବେଳେ ଆମର ସାମ୍ନା ହୁଏ, ଗୋଟାଏ ବ୍ରହ୍ମ ରାକ୍ଷସ ଭଳି, ନଟୁଭଳି ...।

କଥା ମଝିରେ ଅର୍ଚ୍ଚନା ମତେ ଚା ଏବଂ ନିର୍ମଳକୁ ବଟିକା ସହ ଗରମ ପାଣି ଆଣି ଦେଇଗଲା । ହୁଏତ ସେ ନିର୍ମଳର ଏଇ ଯୁକ୍ତି ସବୁ ଶୁଣି ରୋଷେଇ ଶାଳରେ ଥମ୍ ଥମ୍ ହେଉଥିଲା ସେତେବେଳେ ।

ସେଦିନ ରାତିରେ ନିର୍ମଳର ଆଶୁ ଆରୋଗ୍ୟ କାମନା ପୂର୍ବକ ଫେରିବା ପୂର୍ବରୁ ମୁଁ ଥରେ ମୋର ମୁଖ ମଣ୍ଡଳକୁ ଆକାଶନ୍ମୁଖୀ କରିଥିଲି ଓ ଠିକ୍ ସେଇ ମୁହୂର୍ତ୍ତରେ କାଛରେ

ଝୁଲୁଥିବା ଯୁଗଳ ଫଟୋଟି ନିର୍ମଳ ଏବଂ ଅର୍ଚ୍ଚନାର ବିବାହ ସମୟର ବୋଲି ସ୍ଥିର ନିଶ୍ଚିତ ଥିଲି । ଫଟୋ ଭିତରେ ସେମାନେ ବେଶ୍ ପ୍ରଫୁଲ୍ଲ ଓ ସ୍ୱପ୍ନ ପ୍ରବଣ ଜଣା ପଡୁଥିଲେ ।

ଏହାର କିଛି ଦିନ ପରେ ନିର୍ମଳ ରୋଗମୁକ୍ତ ହେଲା ଏବଂ ତାର ଶରୀର ମଧ୍ୟ ପୂର୍ବାପେକ୍ଷା ଯଥେଷ୍ଟ ଦୁର୍ବଳ ଥିଲା । କିନ୍ତୁ ତା ଭିତରେ ଯେଉଁ ଉଲ୍ଲେଖନୀୟ ପରିବର୍ତ୍ତନଟି ଘଟିଥିଲା ସେଇଟି ଅନ୍ୟମନସ୍କତା ଛଡ଼ା ଆଉ କିଛି ନୁହେଁ । କାରଣ ସ୍ୱରୂପ ଅଫିସ୍‌ରେ ପୂର୍ବାପେକ୍ଷା ନିର୍ମଳ ବେଶୀ ପ୍ରିୟଭାଜନ ହେଇ ପାରୁନଥିଲା ଉପରିସ୍ଥ କର୍ମଚାରୀଙ୍କର ।

ଏହାର କିଛି ଦିନ ପରେ ନିର୍ମଳ ମରିଗଲା । ନିର୍ମଳ ମରିବା ସମୟରେ ମୁଁ ଅଫିସ୍‌ରେ ଥିଲି ଅଥଚ ବିଶେଷ କିଛି କାମ ନଥିବା ଯୋଗୁ ବାହାରେ ଠିଆ ହେଇ ଶୀତ ସକାଳର ଖରା ଉପଭୋଗ କରୁଥିଲି ।

ନିର୍ମଳ ଯେତେବେଳେ ଛୋଟ ଚିତ୍କାରଟିଏ କରି ମରିଗଲା, ଅର୍ଥାତ୍ ମେସିନ୍ ଭିତରେ ଚାପି ହେଇଗଲା, ଛୋଟ ଛୁଆଟା ପାଇଁ ସାଗୁ ଗରମ କରିବା ଲାଗି ଷ୍ଟୋଭରେ ସାଗୁ ଡେକ୍‌ଚି ବସାଇ ଦେଇ ଅର୍ଚ୍ଚନା ତାର ଶାଢ଼ୀ ବଦଳାଉଥିଲା । ନିର୍ମଳର ମୃତ୍ୟୁ ସମୟରେ ଅଜିତ୍ ଡୋଲେ ସହରରେ ଘୁରି ଘୁରି ମାର୍ଟିନ୍ ସୋ ସମ୍ପର୍କରେ ଖବର ରଖୁଥିଲା କାରଣ ସେଦିନ ତାର ସାପ୍ତାହିକ ଛୁଟି ଥିଲା । ଛୁଟିଦିନ ମାନଙ୍କରେ ଆଉ କଣ କରାଯାଇ ପାରିବ ?

ନିର୍ମଳର ଡିଉଟି ରାତିରେ ଅର୍ଥାତ୍ ରାତି ଦଶଟାରୁ ସକାଳ ଛ ପର୍ଯ୍ୟନ୍ତ ଥିଲା । ମାତ୍ର ରିଲିଭର ନ ଆସିବା ସତ୍ତ୍ୱେ ସେ କାମ କରୁଥିଲା ବୋଲି ତାର ସିଫ୍ଟ ଇନ୍‌ଚାର୍ଯ୍ୟ କହିଲେ । ସକାଳେ ମେସିନ୍ ପାଖରେ ଠିଆ ହେଇ ସେ କ୍ୟାଲେଣ୍ଡରରେ କିପରି କାଗଜ ଗୁଡ଼ାଇବ ତାହାହିଁ ଚିନ୍ତା କରୁଥିଲା । ବିନା କାରଣରେ ସେ ପଶି ଗଲା ପୋପ୍‌ରିଲ୍ ପାଖକୁ ଓ ଫେଲ୍‌ଟରେ ଆସୁଥିବା କାଗଜକୁ କ୍ୟାଲେଣ୍ଡରରେ ପହଞ୍ଚାଇବା ଲାଗି ସେ ଅନ୍ୟମନସ୍କ ହେଇ ତାର ନିଜ ହାତ ଭର୍ତ୍ତି କରିଦେଲା । ଦୁର୍ଭାଗ୍ୟକୁ ପୋପ୍‌ରିଲ୍ ମଝିରେ ଥିବା ଫାଙ୍କ ଆଉ ଟିକେ ବଡ଼ ହେଇଗଲା, ନିର୍ମଳ ହାତଟା ଛିଣ୍ଡି ନ ଯାଇ ପୁରା ଦିହଟା ତା ଭିତରକୁ ଚାଲିଗଲା ଓ ଆରପଟେ ପହଞ୍ଚିଲା ବେଳକୁ ନିର୍ମଳ ରାୟ ପାଲଟି ଯାଇଥିଲା ରୋଷ୍ଟ ହେଇଥିବା କୁକୁଡ଼ା ଭଳି । ହାତଟା କଟି ଯାଇଛି । ଆଖି ଯୋଡ଼ିକ ପଦାକୁ ଚାଲି ଆସିଛି । ମୁହଁଟା ବିକଟାଳ ହେଇଛି । ସାରା କ୍ୟାଲେଣ୍ଡର ଯାକ ବ୍ଲଟିଂ ପେପର ଭଳି ତାର ରକ୍ତ ଶୋଷି ନେଇଛନ୍ତି ।

ଖରା ପୋଉଥିବା ବେଳେ ଖବର ପାଇଁ ମୁଁ ମେସିନ୍ ଫ୍ଲୋରକୁ ଦୌଡ଼ିଗଲି । ନିର୍ମଳର ନିସାଡ଼ ଦେହଟା ପାଖରେ ଠିଆ ହେଇଥିଲେ ଜେନେରାଲ ମ୍ୟାନେଜର । ସେଠା ଛାଡ଼ି

ଚାଲିଯିବାକୁ ସେ ମତେ ନିର୍ଦ୍ଦେଶ ଦେଲେ । ଖଣ୍ଡେ ବଡ଼ କାଗଜରେ ଧଳା ଚାଦର ପରି ଘୋଡ଼େଇ ଆଣିଲେ ତାର ଦେହକୁ ।

ବିଜୁଳି ପରି କଥାଟା ବ୍ୟାପିଗଲା ଚାରିଆଡ଼େ । ବିଭିନ୍ନ ଡିପାର୍ଟମେଣ୍ଟରୁ ସମସ୍ତେ ଆସି ରୁଣ୍ଡ ହୋଇଗଲେ । ଶ୍ରମିକ ନେତାମାନଙ୍କ ପକ୍ଷରୁ ହରତାଳ ଓ ଶୋକସଭାର ଆୟୋଜନ ଏଥର । କିଛି ସମୟ ଭିତରେ ଆସି ଯାଇଥିଲା ଅଜିତ୍ ଡୋଲେ । ଶୁଣିଛି ଖବର ପାଇବା ମାତ୍ରେ ଅର୍ଚ୍ଚନାର ଚେତା ବୁଡ଼ିଗଲା ଓ ଦଶଘଣ୍ଟା ପରେ ଯେତେବେଳେ ହସ୍‌ପିଟାଲ୍‌ରେ ତା'ର ଚେତା ଫେରିଲା, ସାମ୍ନା ଦର୍ପଣକୁ ଦେଖି ତାର ମନେ ପଡ଼ିଲା ଯେ, ସେ ଆଜିମଥାରେ ସିନ୍ଦୂର ଲଗାଇନି । ଆଉ ବି ଦରକାର ପଡ଼ିଲାନି । ସାମ୍ନାରେ ଠିଆ ହେଇ ଅଜିତ୍ ଡୋଲେ ସାନ୍ତ୍ୱନା ଦେଉଥିଲା ଅର୍ଚ୍ଚନାକୁ ।

ନିର୍ମଳର ମୃତ୍ୟୁ ସମ୍ପର୍କରେ କମ୍ପାନୀର ସେଫ୍‌ଟୀ ଅଫିସର ମନ୍ତବ୍ୟ ଦେଲେ ଆକ୍‌ସିଡେଣ୍ଟ ଇଜ୍ ଏ କଣ୍ଟ୍ରିବ୍ୟୁଟାରି ନେଗ୍‌ଲିଜେନ୍‌ସ ଓ ମାଲିକ କହିଲେ: ଲିଗାଲି ଯିତ୍‌ନା ପୈସା ହୋଗା, ମେଁ ଦୁଁଗା । ନିର୍ମଲ୍ କା ରିଲେସନ୍ କୋ ଭି ନୌକରୀ ମିଲେଗା ।" ମାଲିକର କଥାରେ ଶ୍ରମିକ ନେତାମାନେ ଆଉ କଥା ବଢ଼େଇଲେ ନାହିଁ ।

ନିର୍ମଳର ମୃତ୍ୟୁଜନିତ କାର୍ଯ୍ୟକଳାପ ଯଥା ତାର ଶବଦାହ, ଶୁଦ୍ଧିକ୍ରିୟା ବାବଦକୁ ମାଲିକସବୁ ଖର୍ଚ୍ଚ ବହନ କଲେ ଓ ଏହାର ଦେଢ଼ ମାସ ପରେ ଅର୍ଚ୍ଚନାକୁ ବି କମ୍ପାନୀର ଡେସ୍‌ପାଚ କ୍ଲର୍କ ଚାକିରି ମିଳିଗଲା, ତାର ଶିକ୍ଷାଗତ ଯୋଗ୍ୟତାକୁ ଚାହିଁ ।

ପିଲାମାନଙ୍କର ବୟସ, ଭବିଷ୍ୟତ ଓ ନିଜର ବୃତ୍ତି ଯୋଗୁଁ ନିଜ ମାଆ ପାଖରେ ସେମାନଙ୍କୁ ଛାଡ଼ି ଦେଇ ଆସିଲା ଅର୍ଚ୍ଚନା । ତା ଛଡ଼ା ଆଉ କିଛି ଉପାୟ ନ ଥିଲା । ଚାକିରିର କିଛିଦିନ ପରେ ନିର୍ମଳର ଦୁର୍ଘଟଣା ଜନିତ ମୃତ୍ୟୁ ବାବଦକୁ ଅର୍ଚ୍ଚନାକୁ ମିଳିଲା ଅଶି ହଜାର ଟଙ୍କାର ଚେକ୍ ଆଉ ଅବହେଳାବଶତଃ ସବା ସାନଝିଅର ମୃତ୍ୟୁ ସମ୍ବାଦ ।

ସଂସାରର ସମସ୍ତ ଠୋକର ଖାଇ ଅର୍ଚ୍ଚନା କ୍ରମଶଃ ପଥର ପାଲଟିଗଲା । ସ୍ୱାମୀ ଅଥବା ସବା ସାନ ଝିଅର ମୃତ୍ୟୁକୁ ଭୁଲିଯାଇ ସେ ତା ଚାକିରିରେ ମନୋନିବେଶ କଲା । ତା ଛଡ଼ା ଆଉ କଣ କରନ୍ତା ସିଏ ? ଫ୍ୟାକ୍ଟ୍ରିରେ ସେ ଏକମାତ୍ର ଚାକିରିଆ ଝିଅ । କମ୍ପାନୀ ବସ୍‌ରେ ତା ପାଇଁ ସାମ୍ନାରେ ସ୍ୱତନ୍ତ୍ର ସିଟ୍ । ଜୀବନ ଇମିତି ଚାଲିଲା... ବର୍ଷେ... ଦୁଇବର୍ଷ ।

ଆସ୍ତେ ଆସ୍ତେ ସବୁ ଘଟଣା ଦେହସୁହା ହୋଇଗଲା ।ଯୋଉ ଶ୍ରମିକମାନେ ନିର୍ମଳର ମୃତ୍ୟୁ ପରେ ଅର୍ଚ୍ଚନା ପ୍ରତି ସହାନୁଭୂତିରେ ଭାଙ୍ଗି ପଡୁଥିଲେ, ସେଇମାନେ ପୁଣି ବିଭିନ୍ନ

ପୁରୁଷଙ୍କ ନାଁ ଯୋଡ଼ି ଅର୍ଚ୍ଚନାର କୁତ୍ସାରଟନା କରିବାକୁ ପଛେଇଲେନି । ସେ ସବୁ ଆବର୍ଜନାଠୁ ଦୂରରେ ରହିବାକୁ ମୁଁ ଉଚିତ ମନେକଲି । ଏପରିକି ନିର୍ମଳ ରାୟ ବଞ୍ଚିଥିବା ସମୟରେ ଅର୍ଚ୍ଚନା ସହ ମୋର ଯେତିକି ଆନ୍ତରିକତା ଥିଲା, ସେ ସବୁକୁ ଆଉ ଆଗକୁ ନ ବଢ଼ାଇ ବରଂ ସୀମିତ କରି ଚାଲିଥିଲି । କ୍ରମଶଃ ଅର୍ଚ୍ଚନାର ପରିଚୟ ମୋ ପାଇଁ ଅନ୍ୟମାନଙ୍କ ଭଳିଗୌଣ ହେଇପଡ଼ିଲା ।ମୋର ବୃତ୍ତି ହୁଏତ ତା ହିଁ ଚାହୁଁଥିଲା । ବୃତ୍ତିକୁ ସମ୍ମାନ ଦେବାକୁ ଯାଇ ମୁଁ ଯେ ଅର୍ଚ୍ଚନା ପ୍ରତି ଅବିଚାର କରୁଛି - ଏ ପ୍ରକାର ଚିନ୍ତା ମତେ ବେଳେବେଳେ ନାହୁଡ଼ି ମାରୁଥିଲା ।

ଯେଉଁଦିନ ମୋର ଦଳେ କଲିଗ୍ ଅର୍ଚ୍ଚନା ସହ ଅଜିତ୍ ଡୋଲେର ଅବୈଧ ସମ୍ପର୍କକୁ ନେଇ ଅଫିସ୍‌ରେ ଆଲୋଚନା କଲେ ସେଦିନ ମୁଁ ରାଗରେ ଫାଟିପଡ଼ିଲି । ସେମାନଙ୍କର ହୀନମନ୍ୟତାକୁ ଅନେକ ଥର ଝିଙ୍ଗାସିଲି । ଏପରିକି ଅନେକଦିନ ଯାଏ ସେମାନଙ୍କୁ କଥା ମଧ୍ୟ କହିଲି ନାହିଁ, ଘୃଣାରେ ।

ସେମାନଙ୍କର ଏଇ ଅପଚିନ୍ତାରେ ମୁଁ ଶୋଇବି ପାରି ନ ଥିଲି ଆଜି ବି ଶୋଇପାରୁନି ।

କଣ ପାଇଁ ସ୍ୱର୍ଗତ ନିର୍ମଳ ରାୟର ସ୍ତ୍ରୀ ଅର୍ଚ୍ଚନା ବାହା ହେଇଗଲା ସେଇ ବାଙ୍ଗୁରା, ଚେପ୍‌ଟା ନାକା ଆସାମୀ ଟୋକା ଅଜିତ୍ ଡୋଲେକୁ ? କୋଉ ସମୃଦ୍ଧି, ପ୍ରତିପତ୍ତି ତାକୁ ଘାରି ବସିଲା ନିଜର ଲଜ୍ୟା, ସ୍ଥିତି ଓ ବିମଳ ମାତୃତ୍ୱ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିବା ପାଇଁ ?

ମୋ ପାଖରେ କୌଣସି ଉତ୍ତର ନ ଥିଲା । କେବଳ ନିର୍ମଳର କଥା ମନେ ପଡ଼ିଲା । ଟାଇଫଏଡ୍ ହେଇଥିବା ସମୟର କଥା । ତାର ବାଚାଳମି କଥା । ହୁଏତ ସେ ଜାଣିପାରିଥିଲା, ଅର୍ଚ୍ଚନା ସହ ଅଜିତ୍ ଡୋଲେର କିଛି ଗୋଟେ ସମ୍ପର୍କକୁ, ଯେଉଁଟାକୁ କାହାକୁ ନ କହି ପାରି ସେ ନିଜେ ମରିଗଲା ଓ ଅର୍ଚ୍ଚନା ପାଇଁ ବାଟ ସଫା କରିଦେଲା । ଆଖିପତା ଯୋଡ଼ି ହେଇଯିବା ପୂର୍ବରୁ ମୁଁ ନିଶ୍ଚିତ ହେଲି, କେବଳ ଶ୍ରୀକୃଷ୍ଣ ଜାଣିଥିଲେ ନଟୁକୋଉଠି ଅଛି ଆଉ ନିର୍ମଳ ଜାଣିଥିଲା ପ୍ରେମ କେଉଁଠି ପହଞ୍ଚିଲାଣି ଯା ଭିତରେ ।

# ଆଖି

ପ୍ରତିଟି ସହରର ନିଜସ୍ୱ ଏକ ପ୍ରବୃତ୍ତି ରହିଛି । କିନ୍ତୁ ମୁଁ ଜୀବନଯାପନ କରୁଥିବା ଏଇଛୋଟ ସହର ଖଣ୍ଡିକ ଆଉ ଏକ ବିଶେଷତ୍ୱ ନେଇ ବଞ୍ଚିଛି । ତା ହେଲା ତିଳ ଘଟଣାକୁ ବିନା ସଂକୋଚରେ ତାଳ କରି ବସିବା । ଏପରିକି ପରଚର୍ଚ୍ଚା, କାତରତା ଓ ଅମିତ୍ରପଣ ଇତ୍ୟାଦି ସମସ୍ତ ସାମାଜିକ ବିଲକ୍ଷଣରେ ପରିପୂର୍ଣ୍ଣ ମୋର ଏଇ ଛୋଟ ସହରଟି ।ତେଣୁ ଏଇ ସଂକ୍ରମଣରୁ ମୋର ଭାଉଜଙ୍କୁ ଯେ ସହଜରେ ନିଷ୍କୃତ ମିଳିଯିବ ଭାବିବା ଏକ ବିଡ଼ମ୍ବନା ମାତ୍ର ।

ସେଦିନ ଅଚାନକ ଭାଉଜଙ୍କର ତାତ୍ସଲ୍ୟର କାରଣ ବି ବୁଝି ପାରିଲିନି : ସୁମିତ୍ରାର ଆଖିକୁ କେବେ ପଢ଼ିବାକୁ ଚେଷ୍ଟା କରିବ ତମେ ?"

ଏଠି ସ୍ପଷ୍ଟ କରିଦେବା ଉଚିତ ହେବେ, ଆଜିକୁ ଅନେକ ବର୍ଷ ତଳେ ସୁମିତ୍ରାର ପ୍ରେମରେ ପଡ଼ିଯାଇଥିଲି ବୋଲି ମୋର ଏଇ ଛୋଟ ସହରଟି ଖୁବ୍ ବଦ୍‌ନାମ କରିଛି ମତେ । କେବେ ବି ଏଇ ସହର ବୁଝିବାକୁ ଚାହିଁନି ସୁମିତ୍ରା ସହ ମୋର ସମ୍ପର୍କର ହେତୁ ଓ ସେତୁ କେଉଁଠି ରହିଛି ବୋଲି । ଆପାତତଃ, ବିନା ଯୁକ୍ତିରେ ଏଥର ସ୍ୱୀକାର କରାଯାଉସୁମିତ୍ରାକୁ ମୁଁ ଭଲ ପାଏ ଏବଂ ଏ ଘଟଣା ସହରର ପ୍ରଧାନ ଛକମାନଙ୍କରୁ ଆସ୍ତେ ଆସ୍ତେ ଯାଇ ଭାଉଜଙ୍କ କାନ ପର୍ଯ୍ୟନ୍ତ ପହଞ୍ଚିଯାଇଛି । ହେଲେ ଭଲ ପାଇବାର ସୀମା କେବଳ ଯେ କୌଣସି ଝିଅର ଆଖି ପାଖରେ ଅଟକିଯିବ, ଏ ଯୁକ୍ତି ମାନିନେବାକୁ ମୁଁ ଆଦୌ ଏବେ ପ୍ରସ୍ତୁତ ନୁହେଁ । ତା ଛଡ଼ା ଭାଉଜଙ୍କ ଥିଓରି ଅନୁଯାୟୀ ଯେଉଁ ବୟସରେ ମୁଁ ଝିଅମାନଙ୍କ ଆଖିର ଭାଷା ସ୍ପଷ୍ଟ ଆଉ ନିର୍ଭୁଲ୍ ଭାବେ ପଢ଼ିବା ଉଚିତ, ଅନ୍ତତଃ ସେ ବୟସ ମୋର

ଆଉ ନାହିଁ । ତେଣୁ ସୁମିତ୍ରାର ଅଖି ସମ୍ପର୍କରେ ଭାଉଜଙ୍କର ମନ୍ତବ୍ୟ ମତେ ପରବର୍ତ୍ତୀ ସମୟରେ ଏକ ପ୍ରକାର ତାଗିଦ୍ ଭଳି ମନେ ହେଇଥିଲା । ସ୍ୱଭାବ ସୁଲଭ ଭାଷାରେ ମତେ ସେ ଥରେ ବୁଝାଇବାକୁ ଚେଷ୍ଟା କରିଥିଲେ ।

ଅନେକ ଦିନ ତଳର କଥା ସେ । ଜରାୟୁ ଭିତରେ ଥାଇ ଯେତେବେଳେ ସୁମିତ୍ରା ସୂର୍ଯ୍ୟାଲୋକକୁ ଦେଖିବା ଲାଗି ଅପେକ୍ଷା କରିଥାଏ । ସୁମିତ୍ରାର ବାପା ଓ ମା କୌଣସି ଏକ ସନ୍ଧ୍ୟାରେ ବୁଲୁଥାନ୍ତି ଗୋପାଳପୁର ସମୁଦ୍ରର କୂଳେ କୂଳେ । ନୀଳ ଜଳରାଶିର ତଟାଣରେ ଉଠୁଥାଏ ସେତେବେଳେ ଛୋଟ ଛୋଟ ଉର୍ମିମାଳା । ପରିବେଶ ଖୁବ୍ ମନୋରମ । ଅଦୂରରେ ସମୁଦ୍ରରୁ ମାଛ ଧରି ଜୀବନ ବିତାଉଥିବା ନୋଳିଆମାନଙ୍କର ବସ୍ତି । ସୂର୍ଯ୍ୟାସ୍ତ ହେବାକୁ ଆଉ ଅଳ୍ପ ସମୟ ବାକି । ସୁନା ରଙ୍ଗର ଖରାରେ ଗାଧୋଉଥାନ୍ତି ନିକଟସ୍ଥ ଝାଉଁବଣ ଓ ଆହୁରି ଅନେକ ଗୁଳ୍ମଲତା । ଅଳ୍ପ ଦୂରରେ ଶୀର୍ଣ୍ଣ ବୁଢ଼ାଟିଏ ଭଳି କେଉଁକାଳରୁ ଠିଆ ହେଇଥାଏ କଙ୍କାଳସାର କୋଠାଟିଏ । ମାୟାଗ୍ରସ୍ତ ଏଇ ନିରୋଳା ମୁହୂର୍ତ୍ତରେ ସୁମିତ୍ରାର ମାଆ ଚାହିଁଲେ ସେଇ ଜୀର୍ଣ୍ଣ କୋଠାଟିକୁ ଦେଖିବାପାଇଁ । ପ୍ରତିବାଦ କଲେ ନାହିଁ ସ୍ୱାମୀ । ଦୁହେଁ ଚାଲିଲେ ଏଥର ସେ ମରୁତୀର୍ଥ ଆଡ଼େ । ଏତେବଡ଼ ପ୍ରାଚୀନ କୋଠାଟିର କେହି ଜଣେ ହେଲେ ଦେଖାଶୁଣା କରିବାକୁ ନ ଥିଲେ । ବୁଢ଼ା ହେଇଗଲା ପରେ କାହାର ସମୟ ଅଥବା ସାମର୍ଥ୍ୟ ଅଛି ସେମାନଙ୍କର ହେପାଜତ କରିବାକୁ ?

ଆଦିମ ପ୍ରହରୀ ଭଳି ନିରାପତ୍ତା ଦେବାରେ ଅକ୍ଷମ ମନେ ହେଉଥିବା ପାଚେରୀ ଭିତରେ ସେମାନେ ବୁଲୁଥାନ୍ତି କୋଠାଟିର ଚାରିପାଖେ । ଦେଖିଲେ ମନେ ହେଉଥିଲା ଅନେକ ବର୍ଷ ତଳେ ସେଇ ଯାଗାଟି ବିଭିନ୍ନ ଫୁଲମାନଙ୍କ ଗର୍ବରେ ଆତ୍ମହରା ହେଇ ଯାଇଥିଲା ଯେମିତି ଓ ସେଇଥିଯୋଗୁଁ କାଳକ୍ରମେ ନିଜର ପରିଚୟ ଟିକକ ବି ହଜେଇ ଦେଇଥିଲା ।

କେତେବେଳେ ଯାଏ ସେମାନେ ଏମିତି ବୁଲୁଥାନ୍ତି ସେମାନଙ୍କର ମନେ ନାହିଁ । କେତେବେଳେ ଏକାଠି ତ ପୁଣି କେବେ ଏକା ଏକା, ହଠାତ୍ କୋଠାଟିର ଅପେକ୍ଷାକୃତ ଅନ୍ଧାର ଓ ସଂକୀର୍ଣ୍ଣ କୋଣରେ ଅଚେତ ଅବସ୍ଥାରେ ସୁମିତ୍ରାର ମାଆଙ୍କୁ ପାଇ ବାପା ତାର ଏକଦମ ହତବାକ୍ ହେଇଯାଇଥିଲେ । ଅବିଳମ୍ବେ ନିକଟସ୍ଥ ହସ୍‌ପିଟାଲ୍‌ରେ ଭର୍ତ୍ତି କରାଯାଇଥିଲା ସୁମିତ୍ରାର ମାଆଙ୍କୁ । ଡାକ୍ତରମାନଙ୍କ ଯତ୍ନ ଯୋଗୁଁ ମାତ୍ର କେଇ ଘଣ୍ଟା ପରେ ସୁମିତ୍ରାର ମାଆ ଫେରି ପାଇଥିଲେ ହୃତ ଚେତନ ଶକ୍ତି । ମାତ୍ର ଏ ଘଟଣା ଘଟିଯିବା ପରେ ପରେ ସୁମିତ୍ରାର ମାଆଙ୍କ ଅଚାର ଓ ବ୍ୟବହାରରେ ଲକ୍ଷ୍ୟ କରାଯାଇଥିଲା ଉଲ୍ଲେଖନୀୟ ପରିବର୍ତ୍ତନ । ପୂର୍ବଭଳି କୌଣସି ଘଟଣାକୁ ସେ ହସି ଉଡ଼ାଇ ଦେଇ ନ ଥିଲେ । କଥା କହିବା ଓ

ଚାହିଁବାରେ ଥିଲା ମାତ୍ରାଧିକ ସିରିୟସ୍‌ନେସ୍ । ସୁମିତ୍ରାର ବାପା, ସ୍ତ୍ରୀଙ୍କର ଏତାଦୃଶ ପରିବର୍ତ୍ତନ ସବୁ ଲକ୍ଷ୍ୟ କରିପାରୁଥିଲେ । ବେଳେବେଳେ କୌତୁକ କରିବାକୁ ଯାଇ ହଟହଟାରେ ସେ ପଡ଼ିଯାଉଥିଲେ । ଏପରିକି ସୁମିତ୍ରାର ମାଆ ଦିନେ ଅଭିଯୋଗ କଲେ ଯେ, ରାତିରେ ତାଙ୍କ ବେଡ୍‌ରୁମ୍ ଦେଇ ଗୋଟେ ଛାଇ ଖୁବ୍ ଜୋର୍‌ରେ ଦୌଡ଼ି କରି ଯାଉଥିବା ସେ ଅନୁଭବ କରୁଛନ୍ତି । ସ୍ତ୍ରୀଙ୍କ କଥାରେ ହସି ହସି ବେଦମ୍ ହୋଇଗଲେ ସୁମିତ୍ରାର ବାପା । ମିଲିଟାରୀ ଲୋକ ସେ । ତେବେ ଗୋପାଳପୁରର ସେଇ ଜୀର୍ଣ୍ଣ କୋଠା ପାଖରେ ହଠାତ୍ ପତ୍ନୀଙ୍କର ଅଚେତ ହେଇଯିବା ପଛରେ କିଛି ସମ୍ପର୍କ ଥାଇପାରେ ଭାବି ଚୁପ୍ ରହିଲେ । ତା ପରଠୁ ଅନେକ ଥର ସେ ନିଜେ ବନ୍ଧୁକ ଧରି ଜଗି ବସିଛନ୍ତି ଅନ୍ତଃସତ୍ତ୍ୱା ପତ୍ନୀଙ୍କୁ । କିନ୍ତୁ କାହାରି ସନ୍ଧାନ ପାଇ ପାରିନାହାନ୍ତି । ଏହା ହିଁ ଥିଲା ସୁମିତ୍ରାର ଜନ୍ମ ପୂର୍ବର ବୃତ୍ତାନ୍ତ ।

ଭାଉଜଙ୍କ ଠାରୁ ସୁମିତ୍ରାର ବ୍ୟକ୍ତିଗତ ଜୀବନ ସମ୍ପର୍କରେ ଶୁଣିବା ପରେ ମୁଁ ମନେ ମନେ ବିରକ୍ତ ହେଇ କହିଲି: ତମେ ତ ଏବେ ସୁମିତ୍ରାର ଆଖି ସମ୍ପର୍କରେ କହୁଥିଲ, ସେଠୁ ହଠାତ୍ ତାର ଜନ୍ମପୂର୍ବର ଏତେବଡ଼ ଦୀର୍ଘ ଟିପ୍ପଣୀ ଦେଲଣି । ଯା ପରେ ଆଉ କିଛି କହିବାର ଅଛି ?"

: ଅଛି ।" ପୂର୍ବାପେକ୍ଷା ଭାଉଜଙ୍କ ସ୍ୱରରେ ଟିକେ ରକ୍ଷ ଭାବ । ତେଣୁ ମୁଁ ଶଙ୍କିଗଲି ।

ସୁଯୋଗ ଦେଖି ଭାଉଜଙ୍କର ଏଥର ଆକ୍ଷେପ ମୋ ପ୍ରତି ଆରମ୍ଭ ହୋଇଗଲା: ମୁଁ ଭାବିଥିଲି ସବୁ ପୁଅଙ୍କ ଅପେକ୍ଷା ତମେ ଟିକିଏ ନିଆରା ହେଇଥିବ । କବିତା ଲେଖୁଚ ନା, ସେଇଥି ଯୋଗୁ ।"

: ହଁ, ମୁଁ ଅଲବତ୍ କବିତା ଲେଖେ ଆଉ ସବୁ କବିତାରେ ସୁମିତ୍ରାମାନେ ହିଁ ଥାନ୍ତି । ସେମାନଙ୍କ ଆଖିକୁ ଆକାଶର ନୀଳ ଓ ଭୃଲତାକୁ ଶ୍ରାବଣର ମେଞ୍ଚାଏ ମେଘ ବୋଲି ମୁଁ ବର୍ଣ୍ଣନା ବି କରିଛି । କିନ୍ତୁ ଏଥିରେ ମୋର ଦୋଷଟା ରହିଲା କେଉଁଠି? ପ୍ରେମ କରୁଛି ବୋଲି ତୁମ ଆଗରେ ବାହାସ୍ଫୋଟ ମାରିଲିନି ନା ସୁମିତ୍ରାର ଆଖିର ରଂଗ ପଢ଼ିବାକୁ ଭୁଲିଗଲି ବୋଲି ?" ଭାଉଜଙ୍କ ଅପେକ୍ଷା ମୋ ଗଳାର ଉଚ୍ଚତା ଥିଲା ଅନେକ ପରିମାଣରେ ବେଶି । କିନ୍ତୁ ମୋର ଏତାଦୃଶ ଯୁକ୍ତିରେ ଭାଙ୍ଗି ପଡ଼ିବା ଅଥବା ନାକ ଫଣ ଫଣ କରି ଚାଲିଯିବା ଭଳି ମହିଳା ସେ ନ ଥିଲେ । ବରଂ ମୋର ଉତ୍ତେଜିତ ସ୍ନାୟୁମାନଙ୍କୁ ଟିକିଏ ଥିହାତିଦେବା ଉଦ୍ଦେଶ୍ୟରେ କହିଲେ: ଗୋଟିଏ ଜୀବନକାଳ କୌଣସି ଝିଅର ହୃଦୟକୁ ବୁଝିବା ଲାଗି କଣ ଯଥେଷ୍ଟ ? ଆଉ ଯୋଉମାନେ ଦେହର କୋମଳ ବାସ୍ନାରେ ନିଜକୁ ଖୁବ୍ ଶୀଘ୍ର ହଜାଇ ଦିଅନ୍ତି ସେମାନଙ୍କ ପାଖରୁ ଆତ୍ମାର ମହକ ଖୋଜି ବସିବା ଏକ ବିଡ଼ମ୍ବନା ମାତ୍ର ।"

ଭାଉଜ କଣ କହିବାକୁ ଚାହୁଁଛନ୍ତି ସିଧାସଳଖ ନ କହି ମତେ ଯେ ବାରମ୍ବାର ଏକ ଅଭାବନୀୟ ପରିସ୍ଥିତି ଭିତରକୁ ଟାଣି ଆଣୁଛନ୍ତି, ତାହା ମତେ ଖୁବ୍ କଷ୍ଟ ଦେଉଥିଲା । ମୋର ପରିସ୍ଥିତିକୁ ଅନୁଭବ କରୁଥିଲେ ବି ଭାଉଜ ଯେମିତି ଉପାୟହୀନା ଜଣାପଡୁଥିଲେ । ସାପୁଆ କେଳାର ପେଡ଼ି ପରି ପୁଣି ସେ ଖୋଲିଦେଲେ ସୁମିତ୍ରାର ଶୈଶବ ସମ୍ପର୍କିତ ଘଟଣା ସବୁ ।

ସେତେବେଳକୁ ସୁମିତ୍ରାର ବୟସ ଚାରିବର୍ଷ । ବାପାମାଆଙ୍କର ସବା ସାନ ଝିଅ । ତେଣୁ ସ୍ନେହ ଆଉ ସ୍ୱାଧୀନତାରେ ଅଭାବ ନାହିଁ । ଥରି ଥରି ଚାଲିବା ଆଉ ଥମି ଥମି କଥା କହିବାର ବୟସକୁ ଦେଖିଲେ ମନେପଡ଼ିଯାଏ ଗଛର କୋଉ ଏକ ଡାଳର ଫାଙ୍କ ଦେଇ ଉତୁରି ପଡ଼ିଥିବା ନୂଆ ପତ୍ରର ଅଝଟପଣ ।

ଅବଲୀଳାକ୍ରମେ ସୁମିତ୍ରାର ବାପା ମଧ୍ୟ ଖୁବ୍ ବ୍ୟସ୍ତ ରହୁଥିଲେ ସରକାରୀ କାମରେ ଏବଂ ଆଶା କରୁଥିଲେ କୌଣସି ଦିନ ହୁଏତ ତାଙ୍କୁ ପ୍ରମୋଶନ ମିଳିଯିବବୋଲି । ନିଜ ପିଲାମାନଙ୍କର ଲାଳନ ଏବଂ ସେମାନଙ୍କର ଅଳି ଅର୍ଦ୍ଦଳି ମେଣ୍ଟାଇବାକୁ ଯାଇ ସୁମିତ୍ରାର ମାଆ ଦିନର ପ୍ରାୟତଃ ଅଂଶ ସମସ୍ତ ଖର୍ଚ୍ଚ କରି ଦେଉଥିଲେ । ଏପରିକି ସ୍ୱାମୀଙ୍କ ସହ ଗୋପାଳପୁରର ସମୁଦ୍ର କୂଳରେ ଥିବା ସେଇ ଭଙ୍ଗା କୋଠା ଓ ବେଡ୍‌ରୁମ୍‌ରେ କଳାଛାଇର ଆବିର୍ଭାବକୁ ସେ ଏକରକମ ପାଶୋରି ଦେଇଥିଲେ ।

ମାତ୍ର ଏ ସବୁର ଆରମ୍ଭ ହେଲା ଆକସ୍ମିକ ଭାବରେ ଦିନେ ଅତିକ୍ରାନ୍ତ ସକାଳରେ ।

ସକାଳର ଜଳଖିଆ ତିଆରି କରିବା ଲାଗି ସୁମିତ୍ରାର ମାଆ ପୂଜାରୀ ସହ ବି ବ୍ୟସ୍ତ ଥିଲେ । ରୋଷେଇଶାଳ ପାଖକୁ ଲାଗିଥିବା ବାରଣ୍ଡାରେ ବସି କିଛି ପରିବା କାଟିଦେବା ତାଙ୍କର ଏକ ଅଭ୍ୟାସରେ ପରିଣତ ହେଇଯାଇଥିଲା । ବାରଣ୍ଡା ସାମ୍ନା ବଗିଚାରେ କିଛି ନା କିଛି ଫୁଲ ଫୁଟୁଥାଏ ବର୍ଷସାରା । ଉପରେ ଅନନ୍ତ ଆକାଶ ନେଳିଆ ସିଲଟର ପ୍ରତ୍ୟୟ ଆଣୁଥାଏ ବାରମ୍ବାର । ବାରଣ୍ଡା ପାଖରେ ବସି ଚାବିଦିଆ ଟିଣର ଉଡ଼ାଜାହାଜ ଖେଳନାଟିଏ ଧରି ଖୁବ୍ ବ୍ୟସ୍ତ ଥାଏ ସେତେବେଳେ ଚାରିବର୍ଷର ଶିଶୁ ସୁମିତ୍ରା । ଆକାଶର ପିଠିରେ ଘଷିହେଇ ଏତେ ସକାଳୁ ଗୋଟେ ଉଡ଼ାଜାହାଜ କୁଆଡ଼େ ଯାଉଥାଏ କେଜାଣି ? କିନ୍ତୁ ସେଇଟିକୁ ଦେଖୁ ଦେଖୁ ସୁମିତ୍ରାର ଯେ ଏମିତି ଅଲୌକିକ ଭାବାନ୍ତର ଘଟିବ ସେ କଥା ବି ଜଣା ନ ଥିଲା ତାର ମାଆଙ୍କୁ । ଉଡ଼ିଯାଉଥିବା ଜାହାଜଟିକୁ ଆଙ୍ଗୁଳି ଦେଖାଇ ସୁମିତ୍ରା କହି ଚାଲିଥିଲା: ଦେଖ ମାଆ, ଇମିତିଆ ଗୋଟେ ଜାହାଜ ଆମର ସେଦିନ ଜଳି ଯାଇଥିଲା ଗୋପାଳପୁର ସମୁଦ୍ର କୂଳରେ । ତମେ ଯୋଉ କୋଠା ପାଖରେ ମତେଦେଖି ବେହୋସ୍

ହେଇ ଯାଇଥିଲ ନା- ମୁଁ ତ ସେଠି ଅନେକ ଦିନରୁ ଅପେକ୍ଷା କରି ରହିଥିଲି । ସମସ୍ତେ ଯେ ଯୁଆଡ଼େ ଚାଲିଗଲେ । ମତେ ଭାରି ଏକୁଟିଆ ଲାଗୁଥିଲା । ସେଇଥିପାଇଁ ତ ତମ ସହ ଚାଲି ଆସିଲି ।" ଏ ସବୁ କହିଲାବେଳେ ସୁମିତ୍ରାର ଶିଶୁ ସୁଲଭ ସ୍ୱର ବଦଳରେ ଆଉ ଏକ ଭିନ୍ନ ସ୍ୱର ଶୁଣାଯାଉଥିଲା ଯେପରି ।

ପରିବା କାଟୁ କାଟୁ ମାଆଙ୍କର ହାତ ଅଟକିଗଲା । ଆଶ୍ଚର୍ଯ୍ୟ ଚକିତହେଇଗଲେ ସେ । ଆଖିକୋଣରେ ଜକେଇ ଆସିଲା ଲୁହ । ନିଜ ଶିଶୁର ଏଇ ଅଦ୍ଭୁତ ପରିବର୍ତ୍ତନ, ଯୋଉ ଘଟଣା ସହ ସେ ନିଜେ ବି ଜଡ଼ିତ, ତାଙ୍କୁ ଖୁବ୍ ଭୟ ଦେଇଥିଲା ସେ ମୁହୂର୍ତ୍ତରେ । ତାଙ୍କ ମୃଦୁ ଚିତ୍କାର ଶୁଣି ସେଠାରେ ମଧ୍ୟ ପହଞ୍ଚି ସାରିଥିଲେ ସୁମିତ୍ରାର ବାପା । ପତ୍ନୀଙ୍କଠାରୁ ସୁମିତ୍ରା ସମ୍ପର୍କରେ ଶୁଣି ସେ ବି କମ୍ ଆଶ୍ଚର୍ଯ୍ୟ ହେଇ ନ ଥିଲେ ସେଦିନ ।

ତା ପରେ ଅନେକ ପୂଜା, ଅନେକ ଗୁଣିଗାରେଡ଼ିରେ ସୁମିତ୍ରା ବାପା ବେଶ୍ କିଛି ଖର୍ଚ୍ଚ କରିଥିଲେ । ହେଲେ ସୁମିତ୍ରା ମାଆଙ୍କୁ କହିଥିବା କଥା ସବୁ ଭୁଲିଯାଇଥିଲା ପରବର୍ତ୍ତୀ ମୁହୂର୍ତ୍ତରେ । ଶୁଣିବାକୁ ଅନେକ ଚେଷ୍ଟା କରି ତାର ବାପା ବିଫଳ ହେଇଥିଲେ । ଘଟଣାର ସତ୍ୟତା ଜାଣିବା ଲାଗି ନିଜେ ସଂଗୁପ୍ତ ଅନୁସନ୍ଧାନ କରି ସୁମିତ୍ରାର ବାପା ଜାଣିବାକୁ ପାଇଥିଲେ: କିଛି ବର୍ଷ ପୂର୍ବେ ଗୋପାଳପୁର ସମୁଦ୍ର କୂଳରେ ଗୋଟାଏ ଉଡ଼ାଜାହାଜ ଦୁର୍ଘଟଣାରେ ଅନ୍ୟୁନ ଦଶଜଣ ବିଦେଶୀ ଲୋକ ପୋଡ଼ି ପାଉଁଶ ହେଇ ଯାଉଥିଲେ ।

ଚୁପ୍‌ଚାପ୍ କୌଣସି ଭୌତିକ କାହାଣୀ ଶୁଣୁଥିବାର ଦେଖି ଭାଉଜ ଏଥର ମତେ କହିବାକୁ ଲାଗିଲେ: ବୁଝିଲ ତ ଏଥର, ସୁମିତ୍ରାର ଆଖିଗୁଡ଼ାକ କାହିଁକି ନୀଳ ରଙ୍ଗର ? ଆଉ ନୀରବତାକୁ କିଆଁ ଏତେ ବେଶି ଭଲ ପାଏ ସେ ?"

ଭାଉଜଙ୍କ କଥା ଶୁଣିବା ପରେ ମୁଁ ଏଥର ଚୁପ୍ ଚାପ୍ ଚାଲିଲି ସୁମିତ୍ରାର ଘର ଆଡ଼େ, ଯାହାକୁ ନ ଦେଖିଲେ ମତେ ଯୁଗଟିଏ ଭଳି ମନେହୁଏ । ସୁମିତ୍ରାର ଜନ୍ମ ପୂର୍ବରୁ ଘଟିଯାଇଥିବା ଏଇସବୁ ଘଟଣାକୁ ନିଜ ମନରେ ଓଲଟପାଲଟ କରୁ କରୁ ମୁଁ ଲକ୍ଷ୍ୟ କଲି- ସହରର ରାଜ ରାସ୍ତାରେ ନିର୍ବିଘ୍ନରେ ଆତଯାତ ହେଉଥିବା କୌଣସି ଗୋଟିଏ ହେଲେ ଲୋକର ଆଖି ନାହିଁ ।

# ଜନ୍ ଏଫ୍ କେନେଡ଼ି

କେହି ଯଦି ନିର୍ମଳବାବୁଙ୍କୁ ତାଙ୍କ ବସା ଠିକଣା କେବେ ପଚାରି ବସେ, ସେ ସବୁବେଳେ ଗୋଟିଏ ରକମର ଉତ୍ତର ତାଙ୍କଠୁ ପାଇବ, ଯାହାର ସାରାଂଶ ହେଲା: ଏ ସହରରେ ଯୋଉ ବଗିଚାରେ ସବୁଠୁ ବେଶି ଫୁଲ ଫୁଟେ ସେଇଟା ହିଁ ମୋର ଘର ।

କଥାଟା ଅବଶ୍ୟ ମିଛ ନୁହେଁ । ବର୍ଷଯାକ ନାନା କିସମର ଫୁଲରେ ଲହଡ଼ି ଭାଙ୍ଗୁଥାଏ ନିର୍ମଳ ମେହେରଙ୍କ ଘର ସାମ୍ନା ବଗିଚାଟି । ଭିନ୍ନ କିସମର ରଂଗ, ଆକୃତି ଓ ଗଂଧ ସାଂଗକୁ ନାଆଁଗୁଡ଼ାକ ବି ବେଶ୍ ମନଛୁଆଁ - ସ୍ନୋବଲ୍, ପିଂକ୍ କ୍ଲାଉଡ୍, ଲୁସିଆନା, ଅଭିସାରିକା, ସୋନାର୍ ବାଂଗ୍‌ଲା ଇତ୍ୟାଦି ।

ନିର୍ମଳବାବୁ କେବଳ ଫୁଲକୁ ଭଲ ପାଆନ୍ତି ବୋଲି କହିଲେ ତାଙ୍କ ବ୍ୟକ୍ତିତ୍ୱର ଅନେକ ଦିଗକୁ ଚିହ୍ନିବା ସମ୍ଭବ ହେବ ନାହିଁ ବରଂ ନିଶ୍ୱାସ ପ୍ରଶ୍ୱାସ ସହ ମଣିଷର ସମ୍ପର୍କ ଅଭିନ୍ନ ରହିବା ପରି ଫୁଲମାନଙ୍କ ସହ ତାଙ୍କର ନିବିଡ଼ତାକୁ ତୁଳନା କରାଯାଇପାରେ ।

ପରିଣତ ବୟସରେ ଯେତେବେଳେ ଝିଅର ବିଭାଘର ଆଉ ପୁଅର ଇଞ୍ଜିନିୟରିଂ ପଢ଼ିବାପାଇଁ ତାଙ୍କୁ ସ୍ୱଉପାର୍ଜିତ ମାରୁତି କାର୍‌ଟିକୁ ବିକ୍ରିନେବା ଭଳି ନିଷ୍ପତ୍ତି ନେବାକୁ ପଡ଼ିଲା, ସେଇ ସମୟରେ ସ୍ତ୍ରୀ ସୁଲକ୍ଷଣୀଙ୍କର ମୃଦୁ ଅଭିଯୋଗ ତାଙ୍କ ପାଖରେ ପହଞ୍ଚିଲା: ପଡ଼ିଶା ଘରର ମହାନ୍ତିବାବୁ ତ ପୁଣି ତମ ଭଳି ଚାକିରି କରୁଛନ୍ତି । ଏବେ ଶୈଳଶ୍ରୀବିହାରରେ ପୁଣି ଗୋଟେ ଆପାର୍ଟମେଣ୍ଟ କିଣିଲେଣି । ତମର କିନ୍ତୁ ସବୁବେଳେ ସେଇ ଫୁଲ ଆଉ ଫୁଲ... ।

ନିର୍ମଳବାବୁ ସ୍ତ୍ରୀଙ୍କ ଅନୁରୋଧକୁ ସହ୍ୟ କରନ୍ତି, ଆଗଭଳି ।

ରାଜ୍ୟ ସରକାରଙ୍କ ଅଧୀନସ୍ଥ ଶ୍ରମ ବିଭାଗର ଜଣେ ପଦସ୍ଥ କର୍ମଚାରୀ ସେ । ମୋଟା ଦରମା ସାଙ୍ଗକୁ ପ୍ରଭୂତ କ୍ଷମତାଓ ଆଉ ଅନେକ ଅନେକ ନମସ୍କାରର ଅଧିକାରୀ ମଧ୍ୟ । କିନ୍ତୁ ସବୁବେଳେ ଗୋଟେ ପ୍ରଚ୍ଛନ୍ନ ଅଭାବବୋଧ ତାଙ୍କୁ ଜାବୋଡ଼ି ଧରିଥାଏ ଯିମିତି ।

ସେଦିନଟି ଥିଲା ଡିସେମ୍ବରର ଏକ ଅଳସ ତଥା ଉତ୍ତୀର୍ଣ୍ଣ ଅପରାହ୍ଣ । ସବୁଦିନ ପରି ଅଫିସ୍‌ରୁ ଫେରି ନିର୍ମଳବାବୁ ସିଧା ପହଞ୍ଚିଗଲେ ଘର ସାମ୍ନାର ବଗିଚାରେ । ଜଣେ ରାଜାଙ୍କୁ ଅପେକ୍ଷା କରିଥିବା ନିରୀହ ପ୍ରଜାମାନଙ୍କ ପରି ଏଇ କ୍ଲାନ୍ତ ଫୁଲମାନେ ଯେପରି ନିର୍ମଳବାବୁଙ୍କୁ ସେମାନଙ୍କ ଗହଣରେ ପାଇ ହଠାତ୍ ସତେଜ ହେଇ ଉଠିଲେ ! ଅବିରତ ଦୁଇଟି ଘଣ୍ଟା ମାଳି ଦିନସାରା ଫୁଲମାନଙ୍କ ଯତ୍ନନେବା ପରେ ଘରବାହୁଡ଼ାର ପ୍ରସ୍ତୁତି ପର୍ବରେ ପହଞ୍ଚିବାକୁ ଅଳ୍ପ ସମୟ ବାକିଥାଏ ।

ଗରମ ଚା'ର ମଜା ନେଉ ନେଉ ନିର୍ମଳବାବୁ ଅପଲକ ଭାବେ ଚାହିଁଥାନ୍ତି କିଶୋର ଗୋଲାପ ଗଛଟି ଆଡ଼େ । ସଦ୍ୟ ତାଙ୍କ ବଗିଚାରେ ଫୁଟିଥିବା ପ୍ରତିଟି ଗଛ ପଛରେ ଗୋଟେ ଗୋଟେ ଇତିହାସ ଆତ୍ମଗୋପନ କରିଥାଏ । କିନ୍ତୁ ମାସକ ତଳେ କଲିକତାର ଲିଣ୍ଡ୍‌ସେ ଷ୍ଟ୍ରିଟର୍ ଫୁଟ୍‌ପାଥ୍‌ରୁ ଆଣିଥିବା ଏଇ ଗୋଲାପ ଗଛଟିକୁ ପାଇବା ପାଇଁ ତାଙ୍କୁ କେବଳ ଅର୍ଥ ନୁହେଁ, ଯେଉଁ ଶାରିରୀକ ଯନ୍ତ୍ରଣା ସହ୍ୟ କରିବାକୁ ପଡ଼ିଥିଲା - ତାହା ଏବେ ବି ତାଙ୍କ ସ୍ମୃତିପଟରେ ଥାଏ ସତେଜ - ଠିକ୍ ଏଇ ଗୋଲାପ ଚାରାଟି ପରି ।

ଲିଣ୍ଡ୍‌ସେ ଷ୍ଟ୍ରିଟ୍‌ରେ ପହଞ୍ଚିବାର ପୂର୍ବଦିନ ସେ ଅଫିସ୍‌ରେ ବସି ନିତିଦିନ ପରି ଭିନ୍ନ ଭିନ୍ନ ଫାଇଲ୍‌ରେ ନିଜର ଟିପ୍‌ପଣୀ ମାନ ଲେଖୁଥାନ୍ତି । ତାଙ୍କର ଏକାଗ୍ରତା ଭାଙ୍ଗି କୋଠରୀ ଭିତରକୁ ପଶିଆସିଲା ନରେନ୍ଦ୍ର ସାସମଲ୍ । ନରେନ୍ଦ୍ର ସାସ୍‌ମଲ ହେଉଚି ନିର୍ମଳବାବୁଙ୍କର ଜଣେ ଅଧସ୍ତନ କର୍ମଚାରୀ । ବାଙ୍ଗରା ଅଥଚ କଳା ଚେହେରାର ଏଇ ଲୋକଟି ବିନା ମତଲବରେ କାହା ପାଖକୁ ଯାଏନା ବୋଲି ନିର୍ମଳବାବୁ ଜାଣନ୍ତି । ତାର ଅହେତୁକ ଆଗମନରେ ବିରକ୍ତ ହୋଇଥିଲେ ନିର୍ମଳବାବୁ । ଅଥଚ ନରେନ୍ଦ୍ର ସାସ୍‌ମଲ୍ ସେଦିନ ଦେଇଥିବା ସୂଚନାଟିରେ ନିର୍ମଳବାବୁ ଏତେ ଖୁସୀ ହୋଇଯାଇଥିଲେଯେ, କାଳବିଳମ୍ବ ନ କରି ତାର ଆଡ୍‌ଭାନ୍ସ ଦରଖାସ୍ତଟିକୁ ସେ ମଞ୍ଜୁରି ପ୍ରଦାନ କରିଦେଇଥିଲେ । ନରେନ୍ଦ୍ର ସାସ୍‌ମଲ୍ ଲୋକଟି ସିନା କ୍ଷୁଦ୍ର, ମାତ୍ର ଖବର ରଖିବାରେ ଗୋଟେ ଖଣି ବୋଲି ଅଫିସ୍‌ରେ ତାର ବଦନାମ ଅଛି । ବାସ୍ତବିକ ତା ନ ହୋଇଥିଲେ ନିର୍ମଳବାବୁ କିଏ, ଆଉ ଲିଣ୍ଡ୍‌ସେ ଷ୍ଟ୍ରିଟ୍ କିଏ ? ଶେଷରେ ସାସମଲ୍ କଥା ସତ ହେଲା ଆଉ ନିର୍ମଳବାବୁ କଲିକତା ସହରର ଏଇ ପରିଚିତ ଗଳି

ଭିତରୁ ଯେଉଁ ପ୍ରସ୍ଫୁଟିତ ତାରାଟିକୁ ଆଣି ନିଜ ବଗିଚାରେ ରଖିବାରେ ସକ୍ଷମ ହେଲେ - ତାର ନାଁଟା ବି ଥିଲା ବେଶ୍ ମନମତାଣିଆ : 'ଜନ୍ ଏଫ୍ କେନେଡି' ।

କେହିଜଣେ ଲେଖକ କହିଥିଲେ- ତମେ ଯଦି ଗୋଲାପ ଫୁଲକୁ ନିଜ ହାତ ପାପୁଲିରେ ଧରି ରଖିବାକୁ ଇଚ୍ଛା କର, ତେବେ ସେଇ ଗୋଲାପର କଣ୍ଟାର ଆଘାତକୁ ସହ୍ୟ କରିବା ଶିଖ । ସତରେ, ଏଇ ଜନ୍ ଏଫ୍ କେନେଡ଼ିଟିକୁ ପାଇବା ଲାଗି ନିଜ ହୃଦୟ ଭିତରେ ଯେଉଁ ରକ୍ତ ଝରାଇଛନ୍ତି ନିର୍ମଳବାବୁ, ଏତେ ସହଜରେ ତାକୁ ସେ ଭୁଲିବେ କିପରି ?

ସେଦିନ ପୂର୍ବାହ୍ନରେ ନରେନ୍ଦ୍ର ସାସମଲ୍ ପାଖରୁ ଖବର ପାଇବା ପରେ କଲିକତା ଯିବା ଉଦ୍ଦେଶ୍ୟରେ ନିର୍ମଳବାବୁ ଗୋଟେ ଟ୍ରାଭେଲ୍ ଏଜେନ୍‌ସିକୁ ସିଟ୍ ରିଜର୍‌ଭେସନ୍ ପାଇଁ ଅନୁରୋଧ କଲେ ଅଥଚ ତାଙ୍କର ସକଳ ଚେଷ୍ଟା ସତ୍ତ୍ୱେ ନିର୍ମଳବାବୁ ଗୋଟିଏ ବି ସିଟ୍ ପାଇଲେ ନାହିଁ । ସେଦିନ ଥିଲା ସୋମବାର । ତେବେ କୌଣସି ମତେ ସେକେଣ୍ଡ କ୍ଲାସ୍ ଟିକେଟ୍‌ଟିଏ ଧରି ନିର୍ମଳବାବୁ ପୁରୀ-ହାଓ୍ୱଡ଼ା ଏକ୍ସପ୍ରେସ୍‌ରେ ସ୍ଲିପର କୋଚ୍‌ଟିରେ ଚଢ଼ିଗଲେ । ହାତରେ ଆଟାଚି । ଗାଡ଼ି ହାଓ୍ୱଡ଼ା ଅଭିମୁଖେ ଭୁବନେଶ୍ୱର ଷ୍ଟେସନ୍ ଛାଡ଼ିଲା । ଗୋଟିଏ ନିରୀହ ଆତତାୟୀର ମନ ନେଇ ନିର୍ମଳବାବୁ ଗୋଟିଏ କଣକୁ ଠିଆ ହୋଇଥାନ୍ତି । ବଗିର ଅପରପଟେ ବହୁତ ଭିଡ଼ ଲାଗି ରହିଛି । ମହୁଫେଣାକୁ ଘେରି ରହିଥିବା ମାଛି ପରି ଟିକେଟ କଲେକ୍ଟରର ଚାରିପଟେ ମଣିଷମାନେ ହାଉଯାଉ । ହାତଗୁଞ୍ଜା ଦେଇ ନିଜ ନିଜର ବର୍ଥଟିଏ ବାଛିନେବାରେ ସମସ୍ତେ ବ୍ୟସ୍ତ ଓ ବିବ୍ରତ ।

ହଠାତ୍ କୋଳାହଳ ଭିତରେ ଗୋଟେ ନାରୀର କଣ୍ଠ ନିର୍ମଳବାବୁଙ୍କୁ ପ୍ରକୃତିସ୍ଥ କରିଦେଲା: ଆପଣ ବୋଧେ ହାଓ୍ୱଡ଼ା ଯିବେ ।" ଅଧା ଓଡ଼ିଆ ଓ ଅଧା ବଂଗଳାର ଥିଲା ସ୍ୱରଟି । ନିର୍ମଳବାବୁ ପଛକୁ ବୁଲି ଚାହିଁଲେ । କୋଡ଼ିଏ କିମ୍ବା ଏକୋଇଶି ବର୍ଷର ବାଙ୍ଗାଳୀ ଝିଅଟିଏ । ନିଟୋଳ ଶରୀର । ପରିଧାନ ଶାଲଓ୍ୱାର କମିଜ । ଚେହେରା ସାଙ୍ଗକୁ ବେକରେ ଥିବା ଧଳା ରଙ୍ଗର ମାଳି ଆଉ କାନ୍ଧରେ ଏୟାର ବ୍ୟାଗ୍ ଉନ୍ନତ ଆଭିଜାତ୍ୟର ସୂଚନା ଦେଉଛି । ଉଚ୍ଚଶିକ୍ଷିତ ପରି ଲାଗୁଛି । ଚାହାଣିରେ ଆଶଙ୍କା ଓ ସମ୍ଭ୍ରମତା ଏଥର ଆକର୍ଷିତ କଲା ନିର୍ମଳବାବୁଙ୍କୁ ।

: ହଁ କଲିକତା ଯାଉଛି ।" ତମେ...? କହୁ କହୁ ଅଟକି ଗଲେ ନିର୍ମଳବାବୁ ।

: ରିସର୍ଚ୍ଚ କାମରେ ଯାଉଛି ଶାନ୍ତି ନିକେତନ । ସୋସିଓଲଜିରେ ପୋଷ୍ଟ ଗ୍ରାଜୁଏଟ୍ । ମୋ ନାଁ ଶିଖା ଗାଙ୍ଗୁଲି ।

ନିର୍ମଳବାବୁ ଅନୁଭବ କଲେ, ନାଁଟା ପରି ଝିଅର କଥା କହିବାର ଶୈଳୀ ବେଶ୍ କାବ୍ୟିକ । ତା ପରେ କଥାର ଖିଅ ଲମ୍ବିଗଲା ଅନେକ ବାଟ । ଶିଖାର ପରିବାର, ପାଠପଢ଼ା, ଚାକିରି ଖୋଜା ଇତ୍ୟାଦି ଇତ୍ୟାଦି ଭିତରେ ଗୋଟେ ଅହେତୁକ ସମ୍ପର୍କର ମୂଳଦୁଆପଡ଼ିଯାଇଥିଲା ଯିମିତି ଦୁହିଁଙ୍କ ଭିତରେ । ଏ ସବୁ ସତ୍ତ୍ୱେ ଶିଖା ଅନୁରୋଧ କରିଥିଲା ନିର୍ମଳବାବୁଙ୍କୁ ଅନ୍ତତଃ ଏଇ ଟ୍ରେନ୍ ଭିତରେ ସେ ତାଙ୍କର ଅଭିଭାବକତ୍ୱ ଜାରି ରଖିବାକୁ । କାରଣ ଏକୁଟିଆ ଯାତ୍ରା କରିବା ତା ବୟସର ଗୋଟେ ଝିଅ ପାଇଁ ଆଜିକାଲି ଯେପରି ଗୋଟେ ଭୟଙ୍କର ଘଟଣା ହେଇଗଲାଣି - ସେ ଦୃଷ୍ଟିରୁ ଗୋଟାଏ ରାତିର ସୁରକ୍ଷା ପାଇଁ ସେ ନିର୍ମଳବାବୁଙ୍କୁ ଅନୁରୋଧ  କରିବସିଲା ।

ନିର୍ମଳବାବୁ ମନା କରିପାରିଲେନି । ସେତେବେଳକୁ ଟିଟିସି ଆସି ପହଞ୍ଚି ଯାଇଥିଲା ଦୁଇଜଣଙ୍କ ପାଖରେ ।

: ଆପଣମାନଙ୍କ ବର୍ଥ ? ତାଚ୍ଛଲ୍ୟ ଅଥଚ ପ୍ରଶ୍ନବାଚୀ ଟିଟିସି ମୁହଁରେ ଲାଖି ରହିଥାଏ । ନିର୍ମଳବାବୁ ଏଥର ଅନ୍ୟନ୍ୟୋପାୟ ହୋଇ ଶହେ ଟଙ୍କିଆ ନୋଟ୍ ଖଣ୍ଡିଏ ଟିଟିସି ହାତକୁ ବଢ଼ାଇ ଦେଉ ଦେଉ ନିଜର ନାଁ ଆଉ ବୟସ କହିଦେଲେ । ରସିଦ୍ ବହିରେ କାର୍ବନ୍ ଲଗାଉ ଲଗାଉ ଟିଟିସି ଏଥର ପଚାରିଲା-

: ଆପଣଙ୍କର ଝିଅର ନାଁ ଆଉ ବୟସ କହନ୍ତୁ ।"

: ଶିଖା ମେହେର । ବୟସ ଏକୋଇଶି ।" ନିର୍ଲିପ୍ତ ଭାବେ ଉତ୍ତର ଦେଲେ ନିର୍ମଳବାବୁ ।

ପଇସା ରଖି ରସିଦ୍ କାଗଜ ଧରାଇଦେବା ପରେ ଟିଟିସି ଏଥର ପରବର୍ତ୍ତୀ କୋଚ୍‌କୁ ଚାଲିଗଲା, ଆଉ ନିର୍ମଳବାବୁ ଓ ଶିଖା ଗାଙ୍ଗୁଲି ଏଥର ବିନା ପ୍ରତିବାଦରେ ବାପଝିଅର ଭୂମିକା ଭିତରକୁ ଚାଲିଗଲେ ।

ସୌଭାଗ୍ୟକ୍ରମେ ଦୁହିଁଙ୍କର ସିଟ୍ ଥିଲା ପାଖାପାଖି । ସତାବନ ଓ ଅଠାବନ । ତକିଆରେ ପବନ ଭର୍ତ୍ତି କରୁ କରୁ ଶିଖା କହିଲା: ଆପଣଙ୍କୁ କେତେ ପଇସା ଦେବି ?"

: ବାପ କଣ ଝିଅଠୁ ପଇସା ନିଏ ।" ଶିଖା ଚୁପ୍ ରହିଲା ଓ ତା ପାଟିରୁ ବାହାରି ପଡ଼ିଲା: ସରି ।" କଥା ହେଉ ହେଉ ଦୁହିଁଙ୍କୁ କେତେବେଳେ ନିଦ ଲାଗି ଯାଇଥିଲା ।

ନିଦ ଭାଙ୍ଗିଲା ବେଳକୁ ନିର୍ମଳବାବୁ ପହଂଚି ଯାଇଥିଲେ ଖଡ଼ଗପୁରରେ । ଉପର ବର୍ଥକୁ ଚାହିଁଦେଖିଲେ - ନା ଥିଲା ଶିଖା ଗାଂଗୁଲି ନା ତାଙ୍କ ଆଟାଚି । ଗୋଟେ ଶୀତଳ

ଶିହରଣରେ ଥରିଗଲା ତାଙ୍କ ପଞ୍ଜରା । ଲାଇଟ୍ ଲଗାଇ ଚାରିଆଡ଼େ ଖୋଜିଲେ । ଟ୍ରେନ୍ ଛାଡ଼ିବାର ହୁଇସିଲ୍ ବାଜିଲା । ପଛରେ କେଉଁଠି ରହିଗଲା ତାଙ୍କ ଆଟାଚି ଆଉ ଶିଖା ଗାଂଗୁଲି !

ନିର୍ବାକ୍ ନିର୍ମଳ ନିଜ ପ୍ୟାଣ୍ଟ ପକେଟରେ ହାତ ମାରିଲେ । ସୌଭାଗ୍ୟବଶତଃ ତାଙ୍କ ମନିପର୍ସଟି ରହିଯାଇଛି । ରାଗରେ ଥର ଥର ନିର୍ମଳ ଏଥର ଶିଖା ଗାଂଗୁଲି ଉଦ୍ଦେଶ୍ୟରେ ଏକ ନିଶବ୍ଦ ଅଥଚ ଅଶ୍ରାବ୍ୟ ଗାଳି ପବନ ଭିତରକୁ ଛାଡ଼ିଦେଲେ ।

ଜନ୍ ଏଫ୍ କେନେଡ଼ି ଗୋଲାପ ଗଛଟିକୁ ପାଇବା ପଛରେ ଥିବା ଏଇ ବେଦନାକ୍ତ କାହାଣୀଟିକୁ ଏତେ ସହଜରେ ସେ ଭୁଲିଯିବେ କିମିତି ?

ତାଙ୍କ ବଗିଚାକୁ ଆସିବା ଦିନଠୁ ଏଇ ଗୋଲାପ ସହ ତାଙ୍କର ଅହେତୁକ ଆତ୍ମୀୟତା ବଢ଼ିଯାଇଛି । ବେଳେବେଳେ ତାଙ୍କୁ ଲାଗେ ଫୁଲଗଛଟି ତାଙ୍କୁ ଚାହିଁ ଗୁଡ୍‌ମର୍ଣ୍ଣି କରୁଛି । ପାଖୁଡ଼ାର ଓଠ ମେଲାଇ ସ୍ୱାଗତ କରୁଛି । ସପ୍ତାହକ ତଳେ ନିର୍ମଳବାବୁଙ୍କ ମନ ଭିତରେ ଆଉ ଏକ ଖିଆଲ୍ ଆସିଲା ଏବଂ ତତ୍‌କ୍ଷଣାତ୍ ସେ ଜନ୍ ଏଫ୍ କେନେଡ଼ିକୁ ଜଣେ ସହକର୍ମୀକୁ ସୁପାରିଶ କରିବା ଭଂଗୀରେ କହିଲେ:

: ତୁ କାଲି ଅଧା ଫୁଟିବୁ ।'

ବାସ୍, ସକାଳୁ ଆସି ବଗିଚାରେ ପହଂଚି ନିର୍ମଳବାବୁ ନିଜେ ଆଶ୍ଚର୍ଯ୍ୟ ହେଇଗଲେ । ତାଙ୍କ ନିର୍ଦ୍ଦେଶ ମାନି ଜନ୍ ଏଫ୍ କେନେଡି ଅଧା ଫୁଟିଛି । ଆନନ୍ଦରେ ତାଙ୍କ ଆଖି ଛଳେଇ ଆସିଲା । ଫୁଲମାନଙ୍କ ସହ ସ୍ଥାପିତ ହୋଇଥିବା ସମ୍ପର୍କ ବିଷୟରେ ବି ସୁଲକ୍ଷଣାଙ୍କୁ ସେ କିଛି କହିଲେ ନାହିଁ ।

ଏବେ ନିଜେ ନିଜର ପୃଥିବୀଟିଏ ଗଢ଼ି ଚାଲିଛନ୍ତି ନିର୍ମଳବାବୁ ।

ହଠାତ୍ ଦିନେ ତାଙ୍କ ପୃଥିବୀକୁ ଦଳିଚକଟି ଛାରଖାର କରିଦେବାରେ ନେତୃତ୍ୱ ନେଲେ ସୁଲକ୍ଷଣା । ଯଦିଓ ତାଙ୍କ ସ୍ୱାମୀ ଭିନ୍ନ ଭିନ୍ନ ପୁଷ୍ପ ପ୍ରଦର୍ଶନୀରେ ବେଶ୍ ସୁନାମ ଅର୍ଜନ କରିଛନ୍ତି ତଥାପି ସେଥିରେ ଖୁବ୍ ବେଶି ଖୁସି ହେଲାପରି ସେ ଜଣାପଡୁ ନ ଥାନ୍ତି । ଜମାଟ ବାନ୍ଧି ରହିଥିବା ଗ୍ଲାନିର ବନ୍ଧ ଦିନେ ଭସାଇ ନେଲା ନିର୍ମଳବାବୁଙ୍କ ପ୍ରିୟ ପୃଥିବୀଟିକୁ ।

: କେତେଦିନ ଆଉ ଏଫୁଲ ପାଲା ଚାଲିଥିବ ?''

ସୁଲକ୍ଷଣାଙ୍କ ଏଇ କଟୂକ୍ତି ନିର୍ମଳଙ୍କ ହୃଦୟରେ ଆଘାତ ପହଂଚାଇବାକୁ ଥିଲା ଯଥେଷ୍ଟ । ସୁକୋମଳ ମନ ତାଙ୍କର ରୁକ୍ଷ ଆଉ କ୍ରୁରତାର ରୂପନେବାକୁ ବେଶିସମୟ ଲାଗି ନ ଥିଲା । ମୁହୂର୍ତ୍ତକ ଭିତରେ ବର୍ଷ ବର୍ଷର ସଯତ୍ନ ଚାରା ଗଛ ସବୁକୁ କାଟି ଫିଙ୍ଗି ପକାଇଲେ ନିର୍ମଳବାବୁ । କ୍ଷଣକ ଭିତରେ ସବୁ ଶେଷ ହେଇଗଲା ।

ନିଜର ମାନସିକ ଭାରସାମ୍ୟ ହରାଇ ବସିଲେ ସେ । ଅଫିସ୍ ଗଲେ ନାହିଁ । ନିଜର ଜୀବନଯାପନ ପ୍ରଣାଳୀରେ ଅନେକ ଅନେକ ପରିବର୍ତ୍ତନ ଦେଖାଗଲା । ସୁଲକ୍ଷଣା ବୁଝିଗଲେ- ଜୀବନରେ ମସ୍ତବଡ଼ ଭୁଲ୍ ସେ କରିଛନ୍ତି ନିର୍ମଳଙ୍କୁ ଆଘାତ ଦେଇ । ପରିଶେଷରେ ସେ କ୍ଷମା ମାଗିଲେ ଓ ପୁଣିଥରେ ଧ୍ୱସ୍ତବିଧ୍ୱସ୍ତ ବଗିଚାକୁ ସଜାଡ଼ିବାରେ ସ୍ୱାମୀଙ୍କୁ ସହଯୋଗ ମଧ୍ୟ କଲେ ।

ପୁଣି ଜନ୍ ଏଫ୍ କେନେଡ଼ି ଗଛରେ ଗୋଲାପ ଆସିଗଲା ।

କିନ୍ତୁ ନିର୍ମଳ ପୂର୍ବାପେକ୍ଷା ଆଉ ଅଧିକ ଖୁସି ଦେଖାଗଲେ ନାହିଁ । ସେଦିନ ସନ୍ଧ୍ୟାରେ ବଗିଚା ଛାଡ଼ିବା ଆଗରୁ ନିର୍ମଳ ଜନ୍ ଏଫ୍ କେନେଡ଼ି ଉଦ୍ଦେଶ୍ୟରେ ନିଛକ ଅନୁରୋଧ କଲେ: ତୁ କାଲି ସକାଳକୁ ଅଧା ଫୁଟିବୁ ।"

ଅଥଚ ସକାଳେ ଆସି ନିର୍ମଳ ଦେଖିଲେ ଜନ୍ ଏଫ୍ କେନେଡ଼ି ଆଦୌ ଫୁଟିନାହିଁ । ଗତ ସନ୍ଧ୍ୟାର ଅବସ୍ଥା ଏବେ ଯାଏ ରହିଛି । ନିର୍ମଳଙ୍କ ହୃଦୟରେ ଜନ୍ ଏଫ୍ କେନେଡ଼ିର ଅବମାନନା କଣ୍ଟା ଭଳି ଫୁଟିଗଲା । ବହୁତ ଯନ୍ତ୍ରଣା ଅନୁଭବ କଲେ ସେ ।

ବିଗତ ଦିନର କ୍ରୁରତା ପାଇଁ ତାଙ୍କ ଆଖିରେ ଲୁହ ଜକେଇ ଆସିଲା । କ୍ଷମା ମାଗିବା ଉଦ୍ଦେଶ୍ୟରେ ସେ ଜନ୍ ଏଫ୍ କେନେଡ଼ିକୁ ହାତ ଯୋଡ଼ିଲେ ।

# କଣ୍ଢେଇ ନାଚ

ଜୟନ୍ତ ଘରୁ ଯିବାବେଳେ ଅକ୍ଟୋବରର ଆକାଶ ଥିଲା ପରିଷ୍କାର, ଗୋଟେ ନୀଳ ଗାଲିଚା ପରି । ବର୍ଷାର କୌଣସି ସୁରାକ୍ ପାଇ ନ ଥିଲା ସେ । ମାତ୍ର କେଇଟି ମୁହୂର୍ତ୍ତରେ ନୀଳରଂଗ ପାଲଟି ଗଲାଘନକଳା ରଂଗରେ । ଚାରିଆଡ଼େ ବରଯାତ୍ରୀର ରୋଷଣୀ ପରି ଶବ୍ଦ ଆଉ ଆଲୁଅର ଖେଳ ଆରମ୍ଭ ହେଇଗଲା ଯିମିତି ଆକାଶରେ । ତା ପରେ ଝରିପଡ଼ିଲା ଟପ୍ ଟପ୍ ହେଇ ବରକୋଳିଆ ଟୋପା ବାରିପଟ କଦଳୀ ଗଛର ପତ୍ର ଉପରେ । ମନେ ହେଉଥିଲା ଜଣେ ଅଭିଜ୍ଞ ତବଲା ବାଦକ ସଂଗୀତ ସମାରୋହର ଆରମ୍ଭ ପୂର୍ବରୁ ନିଜ ବାଦ୍ୟ ଉପରେ ଅଙ୍ଗୁଳି ଚାଳନା ଅଭ୍ୟାସ କରୁଛନ୍ତି ମାତ୍ର । ପରେ ପରେ ଆରମ୍ଭ ହେଇଗଲା ଅବିରାମ କାନ୍ଦଣା ଗୋଟେ ନାକ କାନ୍ଦୁରି ଝିଅ ପରି ।

ବିଜୁଳି ଚାଲିଯାଇଛି କିଛିସମୟ ଆଗରୁ । ସୂର୍ଯ୍ୟ ବି ପଶ୍ଚିମ ଆକାଶରୁ ସବୁରି ଅଲକ୍ଷ୍ୟରେ ଖସିଯାଇଥିଲେ ଜଣେ ପରାହତ ପ୍ରେମିକପରି ।

ଚାରିଆଡ଼ ଅନ୍ଧାର, ଶୁନ୍‌ଶାନ୍ । ଅଥଚ ଏତେବେଳ ଯାଏଁ ଜୟନ୍ତ ଘରକୁ ଫେରିନି । ଅଳ୍ପ ଦୂରରେ କେହି ଜଣେ ପାଣିର ସିଆର୍ କାଟି ଚବର ଚବର କରି ଯାଉଥିବାର ଶବ୍ଦ କାନରେ ପଡୁଛି । ପବନରେ ଭରିଯାଇଛି ଶୀତଳତା ।

ଚୁପ୍‌ଚାପ୍ ସୁମିତ୍ରା ଅପେକ୍ଷା କରିଛି ଜୟନ୍ତକୁ । ଅପେକ୍ଷା କରିବା ହିଁ ତାର ଅବଶିଷ୍ଟ ଜୀବନର ଗୋଟେ ଦୀର୍ଘ ତଥା ଗୁରୁତ୍ୱପୂର୍ଣ୍ଣ ଘଟଣା କେବଳ । ଝର୍କାର ରେଲିଂ ଦେଇ ଗୋଟାଏ ପତଳା ଅନ୍ଧାରକୁ ସେ ଚିହ୍ନିବାକୁ ଚେଷ୍ଟା କରୁଥିଲା । କଣ ପାଇଁ ଏ ଅନ୍ଧାରକୁ

ଚିହ୍ନିବାରେ ତାର ଏ ବିଫଳତା ? ଅନେକବର୍ଷ ଧରି ସେ ଭଲ ପାଇଆସିଛି ଏଇ ଅନ୍ଧାରକୁ । ନିସର୍ଗରେ । କେତେ ଆରାମ ଆଉ ଆଶ୍ୱାସନା ନ ଦେଇଛି ଏ ଅନ୍ଧାର ତାକୁ ? ସୁମିତ୍ରା ଭାବେ - ଦୁଇଟା ଜିନିଷରେ ଭଗବାନ ତାକୁ ଖୁବ୍ ଅକ୍ଷମ କରି ଦେଇଛନ୍ତି : ସମୟକୁ ଧରି ରଖିବାର ଅହଂକାର ଆଉ ସ୍ମୃତିକୁ ଉପେକ୍ଷା କରିବାର ଔଦ୍ଧତ୍ୟ ।

ପୁଣିଥରେ ମନେ ପଡ଼ିଲା ଜୟନ୍ତର କଥା । ଏ ଯାଏ ଘରକୁ ଜୟନ୍ତର ନ ଫେରିବାର କାରଣ କଣ ହେଇପାରେ ? କିଛି ଆଶଙ୍କା ଓ କିଛି ଆଶା ଫେଣ୍ଟି ହେଇଗଲା ତା ମନ ଭିତରେ: ଘରକୁ ଫେରିବା ରାସ୍ତାରେ ଦୂର୍ଘଟଣା ଘଟି ଯାଇନି ତ ! ନା, ତାର ସାଙ୍ଗ ସଂକେତ ସହ ଆଉ କିଛି ସମୟ ଖେଳିବାର ନିଶା ତାକୁ ସେଠି ବାନ୍ଧି ରଖିଥିବ ।

ସୁମିତ୍ରା ଡରିଗଲା । କାରଣ ତାର ବେଳେ ବେଳେ ଧାରଣା ହୁଏ ଯେ ତାର ଆଶଙ୍କା ସବୁ ବାସ୍ତବ ରୂପ ନେଉଛନ୍ତି । ଜୟନ୍ତର ଯଦି କିଛି ହେଇଯାଏ ? ତେବେ ?

ମାତ୍ର ସୁମିତ୍ରାର ଏଇ ଆଶଙ୍କା ସତ ହେଲାନି । ସେଇ ଅନ୍ଧାର ଭିତରେ ଜୟନ୍ତ ଘରକୁଫେରୁଥିବାର ସେ ସ୍ପଷ୍ଟ ଦେଖିପାରିଲା ଝରକା ଏ ପାଖରୁ । ଆଶଙ୍କା ପରିଣତ ହେଇଗଲା ଚେନାଏ ଆଶ୍ୱାସନାରେ । ହେ ଭଗବାନ୍ ! ଆଶ୍ୱସ୍ତିର ଗୋଟିଏ ଦୀର୍ଘଶ୍ୱାସ ବାହାରି ଆସିଲା ତା ଛାତିରୁ ।

ଜୟନ୍ତ ଘରେ ପାଦ ଦେଉ ଦେଉ ବିଜୁଳିବତୀ ସବୁ ଜଳି ଉଠିଲେ । ସାରା ଅନ୍ଧାରି ଜୀବନ ଭିତରେ ଜୟନ୍ତ ହିଁ ତା ପାଇଁ ଏକମାତ୍ର ଉଜ୍ଜ୍ୱଳ ବର୍ତ୍ତିକା ।

: ସୁମି, ଚା ତିଆରି କରିନୁ ଏ ଯାଏ ?" ସେ ପଟ ବଖରାରୁ ଭାସି ଆସିଲା ବିକଳ ସ୍ୱର ସନାତନଙ୍କର । ହୁଏତ ସେ ସ୍ୱର ଶୁଣି ଚିଡ଼ି ଯାଇଥାନ୍ତା ସେ । ମାତ୍ର ଆଜି ହଠାତ୍ ତା ଭିତରେ ଦୟାର ଅଙ୍କୁରୋଦ୍‌ଗମ୍ ହେଲା ଯିମିତି ।

ସନାତନ ଏଇ ମାତ୍ର ଘଣ୍ଟାକ ତଳେ ଚା ପିଇଥିଲେ । ମାତ୍ର ସ୍ମୃତିଶକ୍ତିର ମାତ୍ରାଧିକ ହ୍ରାସ ଯୋଗୁଁ ଘଣ୍ଟାକ ତଳେ ଘଟୁଥିବା ଘଟଣା ବି ସେ ଏବେ ସୁଦ୍ଧା ମନେ ପକେଇ ପାରୁ ନ ଥିଲେ ।

: ଏବେ ବନେଇ ଦେଉଚି ।" ସୁମିତ୍ରା ଏତକ କହି ତାଙ୍କୁ ସାନ୍ତ୍ୱନା ଦେବାକୁ ଚେଷ୍ଟା କରୁଥିଲା । ପ୍ରକୃତରେ ଚା ତିଆରି କରିବାର ଆବଶ୍ୟକତା ହିଁ ନଥିଲା ।

ଏ ସବୁ ଝିନ୍‌ଝଟ ସତ୍ତ୍ୱେ ସୁମିତ୍ରା ଭୁଲିଯାଇ ନ ଥିଲା ଜୟନ୍ତୁ ପଚାରିବା ଲାଗି ତାର ଖେଳ ସମ୍ପର୍କରେ । ଜୟନ୍ତ ବି ଗୋଟି ଗୋଟି କରି ବଖାଣିଥିଲା ତାର ମା ସାମ୍ନାରେ କିପରି ସେ ଲୁଟୁକୁ ହରେଇ ଦେଇଥିଲା ଆଜି ସନ୍ଧ୍ୟାର ଖେଳରେ ।

ସୁମିତ୍ରା ପୁଣି ଥରେ ଅନ୍ୟମନସ୍କ ହେଇଗଲା । ସବୁ ଖେଳର ଗୋଟେ ନିୟମ ଅଛି : ଗୋଟେ ପକ୍ଷ ଜିତିଲେ ଅପରପକ୍ଷ ହାରେ । ଅଥଚ ସମୟ ଯେଉଁ ନିଷ୍ଠୁର ଖେଳ ଖେଳିଥିଲା ସେଥିରେ ଦୁଇପକ୍ଷ ହିଁ ହାରିଥିଲେ । ଜୀବନକୁ ବାଜି ରଖି ଯେଉଁ ଖେଳ ହୁଏ ସେଇଟା ନିଷ୍ଠୁର ନୁହେଁ ତ ଆଉ କଣ ? ସେ କଥା ଚିନ୍ତା କଲାବେଳକୁ ସବୁକିଛି ଓଲଟପାଲଟ ହେଇଯାଏ ଯିମିତି । ମୁଣ୍ଡ ଭିତରଟା ଝିମ୍ ଝିମ୍ ହୋଇଯାଏ ସୁମିତ୍ରାର ।

ସେ ସବୁ ଦଶବର୍ଷ ତଳର କଥା ।

ଏଇମିତି ଗୋଟାଏ ବର୍ଷାସ୍ନାତ ସନ୍ଧ୍ୟାର ସ୍ମୃତି ଫେରିଆସେ ତା ପାଖକୁ ଦଲକାଏ ଅମାନିଆ ଶୀତଳ ପବନ ପରି ।

: ଏଥର କେଇଦିନ ଛୁଟି ଆଣିଛ ?" ସୁମିତ୍ରା ପଚାରିଲା ସଞ୍ଜୟକୁ ଗରମ ତେଲ କଡ଼େଇରେ ବେସନ ପକୋଡ଼ି ଛାଣ ଛାଣୁ ।

: ପୁରା ଦେଢ଼ ମାସ ।" ସଞ୍ଜୟ ଆଖିରେ ପ୍ରଶ୍ନବାଚୀ ।

: ଆଉ ବାଇଶି ଦିନ ରହିଲା, ଡାକ୍ତର ଦେଇଥିବା ତାରିଖ । ସେଥିଲାଗି... ?

: ଆରେ, ସେଇଥିପାଇଁ ତ ଏଥର ପୁରା ଦେଢ଼ମାସ ଛୁଟି ବହୁତ କଷ୍ଟରେ ମଞ୍ଜୁର କରି ଆସିଛି । କହୁ କହୁ ସଞ୍ଜୟ ସୁମିତ୍ରାର ପେଟରେ ହାତ ବୁଲାଇ ଆଣିଲା ଆଉ ଆଙ୍କିଦେଲା ଗୋଟାଏ ନରମ ଚୁମ୍ବନ । ଶିହିରି ଉଠିଲା ସୁମିତ୍ରାର ସାରା ଦେହ । ଜାବୁଡ଼ିଧରିଲା ସେ ସଞ୍ଜୟକୁ ଗଭୀର ଆଶ୍ଳେଷରେ କିଛି ମୁହୂର୍ତ୍ତ ପାଇଁ ରୋଷେଇ ଘର ଭିତରେ । ଅଦୌ ଖରାପ ଲାଗି ନ ଥିଲା ସେତେବେଳେ ଧୂଆଁ ଭର୍ତ୍ତି ରୋଷେଇ ଘରର ପରିବେଶ ।

ମାତ୍ର ସେ ଭଲ ପାଇବାକୁ ବେଖାତିର୍ କରି ଡାକବାଲା ବଢ଼ାଇଦେଇଥିଲା ଗୋଟେ ଟେଲିଗ୍ରାମ୍ ସୁମିତ୍ରା ହାତରେ : ଲିଭ୍ କ୍ୟାନ୍‌ସେଲ୍‌ଡ । ରିପୋର୍ଟ ଡ୍ୟୁଟି ଇମିଡିଏଟ୍‌ଲି ।"

କାଶ୍ମୀର ଓ ପାକିସ୍ତାନ ସୀମାନ୍ତରେ କୁଆଡ଼େ ଯୁଦ୍ଧ ଲାଗି ଯାଇଥିଲା । ବରଫାବୃତ କାର୍‌ଗିଲ୍ ଅଂଚଳକୁ ଲୁଚି ଲୁଚି ଆସି ଅକ୍ତିଆର କରି ନେଇଥିଲେ ପାକିସ୍ତାନୀ ସୈନିକମାନେ

ଆଉ ସେମାନଙ୍କୁ ଘଉଡ଼େଇବା ପାଇଁ ଭାରତୀୟ ସୈନିକମାନେ ନେଇଥିଲେ ବଜ୍ର ଶପଥ । ସେଇଥିପାଇଁ ଛୁଟି ଦରଖାସ୍ତ ହୋଇ ଡକରା ଆସିଥିଲା ସଂଜୟର । ଯିବା ପୂର୍ବରୁ ସେ ପୁଣିଥରେ ସୁମିତ୍ରାର ବାହୁଧରି ସାନ୍ତ୍ୱନା ଦେଇଥିଲା: ମୁଁ ଖୁବ୍ ଶୀଘ୍ର ଫେରି ଆସିବି, ବ୍ୟସ୍ତ କଣ ପାଇଁ ହଉଚ ?"

ପିଲା ଜନ୍ମ ହେବାର ତାରିଖ ପାଖେଇ ଆସୁଥିବାରୁ ସେ ବସ୍‌ଷ୍ଟାଣ୍ଡ ଯାଏ ଯାଇ ପାରି ନ ଥିଲା ବିଦାୟ ଦେବାକୁ । ଆଟାଚି ଆଉ ବେଡିଙ୍ଗ ଧରି ସାଙ୍ଗରେ ଯାଇଥିଲା ଅଜୟ, ସଂଜୟର ସାନଭାଇ ।

ଠିକ୍ ସପ୍ତାହକ ପରେ, ସଂଜୟ ପ୍ରତ୍ୟାବର୍ତ୍ତନ କରିଥିଲା ସୁମିତ୍ରା ପାଖକୁ ଜୟନ୍ତ ହେଇ । ଜୟନ୍ତର ଜନ୍ମ ଖବର ସାଂଗକୁ ଯୁଦ୍ଧରେ ସଂଜୟର ଶହୀଦ ଖବର ବି ବଢ଼ିପାଣି ପରି ମାଡ଼ିଗଲା ଚାରିଆଡ଼େ । ଖବରକାଗଜ ସାରା ଭର୍ତ୍ତି ହେଇଗଲା କାର୍‌ଗିଲ୍‌ର ଶହୀଦମାନଙ୍କ ସଂପର୍କରେ । ସଂଜୟର କାହାଣୀ ସେଥିରୁ ବାଦ୍ ଯାଆନ୍ତା କିପରି? ନିର୍ବାକ୍ ହେଇଗଲା ସୁମିତ୍ରା ସେଇଦିନଠୁ । ନିସଂଗତା ହେଇଗଲା ତାର ଏକମାତ୍ର ସାଥୀ ।

ପଡ଼ିଶା ଘରର ଝିଅ ରୁନୁ ଟି.ଭି.ରୁ ଦେଖିଥିବା ଦୃଶ୍ୟଟି ଅନେକବାର ଅବଶ୍ୟ କହିଥିବାର ସେ ଶୁଣିପାରେ: ବାୟୁସେନାର ସ୍ୱତନ୍ତ୍ର ବିମାନରେ ଆସି ପହଂଚିଥିଲା ସଂଜୟର ଶବ ଭୁବନେଶ୍ୱର ବିମାନଘାଟିରେ । ସୁସଜ୍ଜିତ କଫିନ୍‌ର ବାହାରେ ସଂଜୟର ନାଁ ସେ ପଢ଼ିପାରିଥିଲା, ଯେବେ ଚାରିଜଣ ଯବାନ୍ କାନ୍ଧ ଉପରେ ରଖି ବିମାନ ତଳକୁ ଆଣୁଥିଲେ । ତା ପରେ ଦେଖା ଦେଇଥିଲା ମୁଖ୍ୟମନ୍ତ୍ରୀ, ବିରୋଧୀ ଦଳ ନେତା ଓ ଅନ୍ୟାନ୍ୟ ବରିଷ୍ଠ ପଦାଧିକାରୀଙ୍କର କଫିନ୍ ଉପରେ ଦେଉଥିବା ପୁଷ୍ପଗୁଚ୍ଛ । ସେ ସବୁ କୁଆଡ଼େ ଖବର କାଗଜମାନଙ୍କରେ ପ୍ରକାଶିତ ହୋଇଥିଲା । ସେଥିରେ ଥିଲା ସଂଜୟର ଜୀବନ କାହାଣୀ । ଅପୂର୍ବ ସାହସିକତାର ପରାକାଷ୍ଠା ଏବଂ ସମଗ୍ର ରାଜ୍ୟରୁ ଝରି ପଡୁଥିବା ସହାନୁଭୂତିର ବର୍ଷା । ତେବେ ରୁନୁଠାରୁ ସେ ଖବର କାଗଜର ବିବରଣୀ ଆଉ ଫଟୋ ସବୁ ନେଇ ପଢ଼ିଛି । ଏତେ ଲୋକାରଣ୍ୟ ସେ କେବେ ବି ଦେଖି ନ ଥିଲା । ଆଉ ଏଇ ଜନ ସମୁଦ୍ରରେ ବାରମ୍ୱାର ସେଦିନ ଅପରାହ୍ଣରେ ପ୍ରତିଧ୍ୱନିତ୍ୱ ହେଉଥିଲା: ଭାରତମାତା କି ଜୟ । ସୁମିତ୍ରାର ସୁପ୍ତ ସ୍ନାୟୁ କିନ୍ତୁ ସେଦିନର ଏଇ ଅଭାବନୀୟ ଦୃଶ୍ୟ ଦେଖିପାରି ନ ଥିଲା ।

ମାତ୍ର ସେ ସବୁ ଦଶବର୍ଷ ତଳର କଥା ।

ମାତ୍ର ଦଶଟି ବର୍ଷ ଭିତରେ କଣ ସମୟ ଏମିତି ବଦଳିଯାଏ ? ମଣିଷ ବି ? ବିବାହର ମାତ୍ର ତିନୋଟି ବସନ୍ତ ପରେ ତା ଜୀବନରେ ଆସିଥିଲା ଧୂ ଧୂ ବୈଶାଖର ରୌଦ୍ରତାପ ।

ସେ କଷ୍ଟର ଯେପରି ବିରାମ ନାହିଁ । ଜୀବନ ପାଲଟି ଯାଇଛି ଗୋଟେ ଶୁଷ୍କ ମରୁଭୂମି । ଅନେକ ସମୟରେ ସେ ମୃଗତୃଷ୍ଣାର କପଟ ପ୍ରେମରେ ପଡ଼ିଛି । କିନ୍ତୁ ସେଠି ଶୀତଳ ଜଳଛାୟାର ଲେଶମାତ୍ର ମିଳିନି ତାକୁ ।

ମୃଗତୃଷ୍ଣାର ଅନ୍ୟନାମ ଅଜୟ । ନୁହେଁ ତ ଆଉ କଣ ? ସଂଜୟର ସାନ ଭାଇ । ତାର ବ୍ୟବହାର ଅନେକ ସମୟରେ ଅନ୍ୟକୁ ଆଶ୍ଚର୍ଯ୍ୟ କରିପକାଏ । ସଂଜୟର କଫିନ୍ ଯେଉଁଦିନ ଭୁବନେଶ୍ୱର ବିମାନ ବନ୍ଦରକୁ ସିଧା ଆସି ଏଠି ପହଂଚିଥିଲା, ହଜାର ହଜାର ଶୋକାର୍ତ୍ତ ଲୋକଙ୍କ ଭିତରେ ଅଜୟର ବୁକୁଫଟା ଚିତ୍କାର ସେଦିନ ସମବେତ ମୁମୂର୍ଷୁ ଜନତାଙ୍କୁ କରିଥିଲା ଆଚମ୍ୱିତ । ଘନ ଘନ କଫିନ୍ ଉପରେମଥା ପିଟି ସେ ବ୍ୟାକୁଳ ହୋଇ ଉଠୁଥିବାର ଘଟଣା ଅନେକ ଦିନ ଯାଏ ଲୋକେ ଭୁଲି ନ ଥିଲେ । ଅଥଚ ଅନୁରୂପ ଭାବେ ଭାଇର ମୃତ୍ୟୁ ପରେ ବିବାହର ମାତ୍ର ପାଞ୍ଚଟା ବର୍ଷରେ ସେ ଘର ଛାଡ଼ି ନିଜ ସ୍ତ୍ରୀ ସହ ଅଲଗା ରହିବା, ମୃତୁକୁ ଅପେକ୍ଷା କରିଥିବା ପିତାଙ୍କୁ ପାଖରେ ନ ରଖି ଗୋଟାଏ ବେସାହାରା ବିଧବା ନାରୀ ପାଖରେ ଛାଡ଼ି ପଳେଇବା ଘଟଣା ସମସ୍ତଙ୍କୁ ଆଶ୍ଚର୍ଯ୍ୟଚକିତ କରିଦେଇଥିଲା ।

: କଣ ପାଇଁ ଅଜୟ ଏମିତି ହେଲା ?

ଅନେକ ଯେତେବେଳେ ସୁମିତ୍ରାକୁ ଏକଥା ପ୍ରଶ୍ନ କରନ୍ତି, ସୁମିତ୍ରା ଚୁପ୍ ରହେ । କଣ ଯାର ଉତ୍ତର ଅଛି ? ସଞ୍ଜୟ ସାମରିକ ବିଭାଗରେ ଚାକିରି କରୁଥିବା ସମୟରେ ଅଜୟ ବି.ଏ. ପାଶ୍ କରି ଘରେ ବସିଥିଲା । ପ୍ରତିଦିନ ଖବରକାଗଜର ପୃଷ୍ଠାମାନଙ୍କରୁ ନିଯୁକ୍ତି ଖବର ପଢ଼ିବା, ବିଭିନ୍ନ ସରକାରୀ ତଥା ବେସରକାରୀ ସଂସ୍ଥାକୁ ସି.ଭି. ପଠାଇବା ତାର ଦୈନନ୍ଦିନ କାର୍ଯ୍ୟକ୍ରମ ପାଲଟିଯାଇଥିଲା ଯିମିତି । ଅଥଚକୌଣସି ଛୋଟିଆ ଚାକିରିଟେ ବି ତାକୁ ମିଳୁ ନ ଥିଲା । ବାପା ବେଳେବେଳେ ବିରକ୍ତ ହେଇ କହୁଥିଲେ : ତୋ ଡାକ ଖର୍ଚ୍ଚ ଏଣିକି ମୁଁ ତୁଲେଇ ପାରିବିନି । ପାରୁଛୁ ଯଦି ଟିଉସନ୍ ଦୁଇ ଚାରିଟା ଧର୍ । ବୁଢ଼ା ସମୟରେ କେତେ ଆଉ ବୋଝ ନେବି ?"

ବାପାଙ୍କ କଥା ଶୁଣି ଅଜୟର ଆଖିରୁ ଝରିପଡ଼ିଥିଲା ଟପ୍‌ଟପ୍ ଲୁହବୁନ୍ଦା । ଅବଶ୍ୟ ଏଇ ଘଟଣାର ଅଳ୍ପଦିନ ପରେ ତାକୁ ଚାକିରି ମିଳିଥିଲା । ନିଜର ସାମର୍ଥ୍ୟ ଯୋଗୁଁ ନୁହେଁ, ବରଂ ସଂଜୟର ମୃତ୍ୟୁ ଯୋଗୁଁ ରାଜ୍ୟ ସରକାରୀ ଦେଇଥିଲେ ଅନୁକଂପାମୂଳକ ଚାକିରିଟିଏ । ପ୍ରଥମେ ସେ ସୁଯୋଗ ମିଳିଥିଲା ସୁମିତ୍ରାକୁ । ମାତ୍ର ସୁମିତ୍ରା ମନା କରିଦେଇଥିଲା । ସଦ୍ୟଜାତ ଜୟନ୍ତକୁ ନେଇ ସେ କୁଆଡ଼େ ଯାଇଥାନ୍ତା ? ଆଉ ସେଇଥିପାଇଁ ଅଜୟ ହେଲା ରାଜ୍ୟ ସରକାରଙ୍କ କଂପାନୀରେ ଜଣେ କନିଷ୍ଠ କିରାଣୀ ।

ଚାକିରି ଜୀବନର ଅୟମାରମ୍ଭ ବେଶ୍ ଠିକ୍ ଥିଲା । ଠିକ୍ ସମୟରେ ଅଫିସ୍‌ରୁ ଫେରିବା, ବଜାର ସଉଦା କରିବା, ବାପାଙ୍କ ପାଇଁ ଅଫିମ ଆଣିଦେବା ରୀତିମତ ଚାଲିଥିଲା ।ପୁଣିଥରେ ସନାତନଙ୍କ ସ୍ୱର ସେପଟୁ ଭାସିଆସିଲା :

: ସଂଜୟ ଫେରିଲା କି ସୁମି !"

ଏଇ ଗୋଟାଏ ବାକ୍ୟ ସୁମିତ୍ରାର ଧୈର୍ଯ୍ୟ ଓ ନିଜ ଉପରେ ଥିବା କର୍ତ୍ତୃତ୍ୱକୁ ଯିମିତି ଛିନ୍‌ଭିନ୍ କରିପକାଏ । ନଦୀର ପାଣିକୁ ଆନିକଟରେ ବାନ୍ଧିରଖିବା ପରି ସୁମିତ୍ରା ଜୋର୍ କରି ଅଟକାଇ ଦେଲା ତାର ଆଖି କୋଣରେ ଜକେଇ ଆସୁଥିବା ଲୁହକୁ । ଜୟନ୍ତ ସାମ୍ନାରେ ଭାଂଗି ପଡ଼ିବାକୁ ଆଦୌ ଚାହେଁନି ସେ ।

ଦିନେ ଗୋଟେ ଅଳସ ଅପରାହ୍ନରେ ସୁମିତ୍ରା ଡ୍ରଇଂ ରୁମ୍‌ରେ ବସି ଟି.ଭି. ସିରିଏଲ୍ ଦେଖୁଥିବା ସମୟରେ ଘର ସାମ୍ନାରେ ଗୋଟାଏ ଅଜଣା ରିକ୍‌ସା ଆସି ଅଟକିଲା । ସେଥିରୁ ଓହ୍ଲେଇଲେ ଅଜୟ ଆଉ ସମୀରା । ଦୁହେଁ ଘରକୁ ଆସି ସୁମିତ୍ରାର ପାଦ ଛୁଇଁଲେ । ସେଇଥିରୁ ସେ ବୁଝିଗଲା ଯେ, ସବୁ ଆଶଙ୍କା ଓ ପ୍ରତୀକ୍ଷାର ଶେଷ ହେଇଗଲା ।

ସେମାନେ ସିଧା ମ୍ୟାରେଜ୍ ରେଜିଷ୍ଟ୍ରେସନ୍ ଅଫିସ୍‌ରୁ ଫେରୁଥିଲେ । ଘଟଣାଟି ବାହାରକୁ ସହଜ ଜଣାପଡୁଥିଲା; କିନ୍ତୁ ପ୍ରକୃତରେ ଏହା ଏତେ ସହଜ ନ ଥିଲା । କେଉଁଠି ଯିମିତି ବିସ୍ଫୋରଣର ଅପେକ୍ଷାରେ ରହିଥିଲା ଆଗ୍ନେୟଗିରିଟାଏ । ଅଜୟ ଯେତେବେଳେ ତା ବାପାଙ୍କୁ ଏକଥା ନେଇ ସାମ୍ନା କଲା, ସେଇ ଆଗ୍ନେୟଗିରିର ଜ୍ୱାଳାମୁଖ ଭୀଷଣ ରୂପ ଧାରଣ କଲା । ସେଇ ବିସ୍ଫୋରଣକୁ ସାମ୍ନା କରିବାର ଆଗ୍ରହ ନ ଥିଲା ଅଜୟର । ଫଳସ୍ୱରୂପ, ନିଜର ନିରାପଦ ରାସ୍ତା ସେ ଆପଣେଇ ନେଲା ।

ଏବେ ସେ ଅଲଗା ରହୁଛି ଏଇ ସହରରେ, ନିଜ ସ୍ତ୍ରୀ ସମୀରା ସହ । ସଂଜୟର ମୃତ୍ୟୁ ପରେ ଯେମିତି ଆଘାତ ଲାଗିଥିଲା ତାଙ୍କୁ ତାଠୁ ଅନେକ ବେଶି ଆଘାତ ଦେଇଥିଲା ଅଜୟର ନିଷ୍ପତ୍ତି । ସଂଜୟ ମୃତ୍ୟୁ ତା ନିଜ ହାତରେ ନ ଥିଲା, ମାତ୍ର ଅଜୟର ? ନିଜର ସ୍ୱାର୍ଥ ପାଇଁ ସେ ତାର ବିଧବା ଭାଉଜ, ମୁମୂର୍ଷୁ ପିତା, ଆଉ କୋମଳମତି ପୁତୁରା ଜୟନ୍ତକୁ ଏତେ ଜଲ୍‌ଦି ଭୁଲିଗଲା !

ଅଜୟର ପିତା ହୁଏତ ତାର ଏଇ ପ୍ରେମ ବିବାହକୁ ଅନ୍ୟ ସମୟରେ ସ୍ୱୀକୃତି ଦେଇଥାନ୍ତେ, ଅନ୍ୟ କୌଣସି ଦିନ ହେଇଥିଲେ ମାତ୍ର ଗୋଟାଏ ମୁସ୍‌ଲିମ୍ ଝିଅର ପ୍ରେମରେ ପଡ଼ି - ଅଜୟ ତାର ଅତୀତକୁ ଏମିତି ଭୁଲିଯିବ ବୋଲି ଧାରଣା ନ ଥିଲା । ମାତ୍ର କେଇ ବର୍ଷତଳେ

ତାର ବଡ଼ଭାଇ ସଂଜୟର ମୃତ୍ୟୁ ହେଇଥିଲା କାର୍‌ଗିଲ୍ ଯୁଦ୍ଧରେ କିଛି ମୁସଲ୍‌ମାନ୍ ସୈନିକଙ୍କ ଦ୍ୱାରା । ବୁଝିହୁଏନା, ପ୍ରେମ ନା ଆପଣା ସ୍ୱାର୍ଥପରତା - ଅଜୟକୁ ଅନ୍ଧ କରିଦେଲା ।

ଅନେକ ଆଗରୁ ସୁରାକ୍ ପାଇଥିଲା ସୁମିତ୍ରା । ଏଣିକି ଅନିୟମିତତା ଆରମ୍ଭ ହେଲା । ରାତି ଦଶଟା ପୂର୍ବରୁ ଘରକୁ ଫେରୁ ନ ଥିଲା ଅଜୟ । ପଚାରିଲେ ଜବାବ ଦଉଥିଲା: ବେଶି କାମ ଦଉଛନ୍ତି । ସବୁ ସବୁ ଡେରି ହେଉଚି । ଏତେ କାମ ଦବାର କାରଣ ହେଉଛି- ଚାକିରିଟା ସେ ନିଜ ଯୋଗ୍ୟତାରେ ପାଇନି, ଗୋଟାଏ ଅନୁକଂପାରେ ଏ ଚାକିରି ତା ହାତ ମୁଠାକୁ ଆସିଛି ।"

ପ୍ରଥମେ ପ୍ରଥମେ ସୁମିତ୍ରା ବିସେଇଥା ଭାବୁଥିଲା । ମାତ୍ର ପରେ ଜାଣିପାରିଲା ଯେ, ଅଜୟ ମିଛ କହୁଛି ।

ସେଦିନ ମାର୍କେଟ୍‌ରୁ ସପିଙ୍ଗ କରି ଫେରିବା ବେଳକୁ ସୁମିତ୍ରା ହଲ୍‌ରୁ ଅଜୟକୁ ଗୋଟେ ଝିଅ ସାଙ୍ଗରେ ମ୍ୟାଟିନ୍ ସୋ ଦେଖି ସିନେମା ହଲ୍‌ରୁ ବାହାରୁଥିବାର ଦେଖିଲା । ସେଦିନ ଯେତେବେଳେ ଅଜୟ ଡେରିରେ ଫେରିଲା, ସୁମିତ୍ରା ତାଚ୍ଛଲ୍ୟରେ କହିଥିଲା: ଆଜି ବି କଣ ବେଶି କାମ ପଡ଼ିଗଲା ଅଫିସ୍‌ରେ । ଭୁଲିଯାଇଚ ଆଜି ଜୟନ୍ତର ଜନ୍ମଦିନ ଆଉ ତମ ଭାଇଙ୍କର... ।" ଅଜୟ କୌଣସି ଜବାବ ଦେଲାନି ।

: ସେ ଝିଅଟିର ନାଁ କଣ ? ଆଉଦିନେ ସୁମିତ୍ରା ପଚାରିଲା ଅଜୟକୁ ।

: ଶର୍ମିଷ୍ଠା- ସଂକ୍ଷିପ୍ତରେ ଜବାବ ଦେଇ ତର ତର ହେଇ ଅଫିସ୍ ଚାଲିଯାଇଥିଲା ସେ । ପ୍ରକୃତରେ ସେ ଶର୍ମିଷ୍ଠା ନ ଥିଲା, ଥିଲା ସମୀରା ।

ପରେ ପରେ ସବୁ ଘଟଣାର ପର୍ଦ୍ଦା ଖୋଲିଗଲା । ସମୀରା ଏବଂ ଅଜୟ ଗୋଟିଏ ଅଫିସ୍‌ରେ କାମ କରନ୍ତି । ମ୍ୟାନେଜିଂ ଡାଇରେକ୍ଟରଙ୍କ ପ୍ରାଇଭେଟ୍ ସେକ୍ରେଟାରୀ ଭାବେ ସେ ନିଯୁକ୍ତି ପାଇଥିଲା । ଅବିବାହିତା ଏବଂ ସୁନ୍ଦରୀ । ଅଫିସ୍ ଜୀବନରୁ ହିଁ ଆରମ୍ଭ ହେଇଛି ପ୍ରେମର ଅଙ୍କୁରୋଦ୍‌ଗମ୍ ।

: କୁଆଡ଼େ ଥିଲୁ ଏତେବେଳ ଯାଏ ? ଦୀର୍ଘ ନିରବତା ଭାଙ୍ଗି ପଚାରିଲା ସୁମିତ୍ରା ।

ଜୟଂତ ଥତ୍‌ମତ୍ ହେଉଥିଲା କିଛି କହିବ ବୋଲି । ମାତ୍ର କହିପାରିଲାନି । ଛେପ ଢୋକିଲା । ସୁମିତ୍ରା ତାର ପିଠି ଆଉଁସି ଦେଲା ।

: ମାମା, ଆମେ ଅଜୟ ଦାଦାଙ୍କ ପାଖକୁ ଯିବାନି ? ମୋର ତାଙ୍କୁ ଦେଖିବାକୁ ଇଚ୍ଛା ହଉଚି ।" ଜୟନ୍ତ କହିଲା ଡରି ଡରି ।

ସୁମିତ୍ରା କଟମଟ ଆଖିରେ ଚାହିଁଲା ଜୟନ୍ତକୁ । ସତେ ଯେମିତି କଅଁଳ ଗାଲରେ ଶକ୍ତ ଚାପୁଡ଼ାଟାଏ ଦେବ ଏଇନେ ! ମାତ୍ର ନିଜକୁ ସମ୍ଭାଳି ନେଲା । ଜୟନ୍ତ ପୁଣି କହିଲା-

: ତାଙ୍କର କୁଆଡ଼େ ସ୍କୁଟର ଆକ୍‌ସିଡେଣ୍ଟ ହେଇଚି । ସଂକେତର ଡାଡି କହୁଥିଲେ । ମୁଣ୍ଡରେ ମାଡ଼ ବାଜିଛି । ସେ କୁଆଡ଼େ ବଂଚିବେନି ।" କହୁ କହୁ ଜୟନ୍ତ କାନ୍ଦି ଉଠିଲା । ସୁମିତ୍ରା ତାକୁ ଜାବୁଡ଼ି ଧରିଲା ଛାତି ଆଡ଼କୁ ଟାଣିନେଇ । ଧାର ଧାର ଲୁହ ବହିଚାଲିଚି ।

: ଆମେ ନିଶ୍ଚୟ ଯିବା, ନିଶ୍ଚୟ ।"

ସୁମିତ୍ରା ଜୟଂତର ଆଖିରୁ ଲୁହ ପୋଛିଲା ।

